ବୃଗ ଶୋକ ମନାର

ଶିରେ ହର ଛାଡ ଅବକାରେ ପଡ ହାନେ ଯଶୋବନ୍ତୀ ଗୁଣୀଯେ
ନେଇ ପିଉଲୀଙ୍କ ମର୍କଟ ମାଇବ ବାହୁଁ ଦଗୃଇଲ ପୁଣି ଦେ ।
ମୋର ରଙ୍କୁଣୀର ଧନ । ପିଣ୍ଡରଖି କେମନେଲ ଜୀବନ ରେ ॥
କୃ : ଲୀ : ପୃ ୨୪

ଯତି ଯଥା!
୬+୬+୬+୩
୬+୬+୬+୩
୮
୮+୩

ଏହାର ଶେଷରେ ତୃତୀୟ ପାଦର ଆବୃତ୍ତି ହେବ ।

୫ ମ ପରିଚ୍ଛେଦ ।

ଦୋଷ,

କବିତାର ରମଣୀୟତା ଯଦ୍ୱାର୍ ହ୍ରାସ ହୁଏ, ତାହାକୁ ଦୋଷ କହନ୍ତି ।

ଏହି ଦୋଷ ତିନିପ୍ରକାର ହୁଏ । ଶବ୍ଦଦୋଷ, ଅର୍ଥଦୋଷ ରସଦୋଷ,

ଶବ୍ଦଦୋଷ ଯଥା ।

| | |
|---|---|
| ୧ ଶ୍ରୁତିକଟୁ | ୮ ଅସମର୍ଥତା |
| ୨ ଅଶ୍ଳୀଳ | ୯ କ୍ଳିଷ୍ଟତା |
| ୩ ଅନୁଚିତତା | ୧୦ ବରୁଦ୍ଧମତି କାରିତା |
| ୪ ଗ୍ରାମ୍ୟତା | ୧୧ ଅସାଧୁତା |
| ୫ ଅପ୍ରତୀତତା | ୧୨ ଅନନ୍ତ ଗୁଣତା |
| ୬ ସନ୍ଦିଗ୍ଧତା | ୧୩ ପୁନରୁକ୍ତତା |
| ୭ କଳ୍ପିତାର୍ଥତା | ୧୪ ଯତିଭଙ୍ଗ |

୧୫ ନ୍ୟୂନପଦତା　　୧୮ ଅକ୍ରମତା

୧୬ ପତ୍ତ୍ପ୍ରକର୍ଷତା　　୧୯ ସମ୍ବନ୍ଧଭ୍ରମ କାରତା

୧୭ ବୃଗନ୍ୟସ୍ତ　　୨୦ ପ୍ରସିଦ୍ଧି ତ୍ୟାଗ

କ୍ରମରେ ଯଥା ।

● ୧ ଶ୍ରୁତିକଟୁ , ରସର ପ୍ରତିକୂଳ ହୋଇ ଶ୍ରୁତିର ଅସୁଖ ଯେ କରେ, ତାହାକୁ ଶ୍ରୁତିକଟୁ ବୋଲିଯାଏ । ଯଥା ।

ଶରତ୍ ପବୋଧିତ ହର୍ମାଂଶୁବକ୍ତ୍ରା, ଏଠାରେ ପବଂଶବ୍ଦ ପ୍ରୟୋଗରେ ଶ୍ରୁତିକଟୁ ହୋଇ ରସର ଅନୁକୂଳ ହୋଇନାହିଁ , ଯେହେତୁ ଶୃଙ୍ଗାର ରସରେ ଗୁରୁ ଶବ୍ଦ ପ୍ରୟୋଗ ଦୋଷ ଅଟେ ।

† ୨ ଅଶ୍ଳୀଳ

ଯେଉଁ ପଦର ଅର୍ଥ ଭିନ୍ନ ଥିଲେ ସୁଦ୍ଧା ପଠନ ବା ଶ୍ରବଣ ମାତ୍ରେ ଲଜ୍ଜା ବା ଘୃଣା ଅଥବା ଅମଙ୍ଗଳ ବ୍ୟଞ୍ଜିତ ହୁଏ , ତାହାକୁ ଅଶ୍ଳୀଳ କହନ୍ତି ଏହା ତିନପ୍ରକାର ହୁଏ ଯଥା ।

୧ ଲଜ୍ଜା , ୨ ଘୃଣା ୩ ଅମଙ୍ଗଳ , ।

୧ ମ ଲଜ୍ଜା ଯଥା ।

---

● ବକ୍ତାର କ୍ରୋଧଯୁକ୍ତ ବାକ୍ୟକୁ ରୌଦ୍ର, ବୀର ରସରେ ଏହା ଗୁଣ ହୁଏ ଯଥା ।

ସମ୍ପାଦିତ ତୀକ୍ଷ୍ଣମାର୍ଗଣ, ଜାତ ଗୁଣଟଙ୍କାର ଯହିଁ ସ୍ଵନତ, କୃପାଣ ଦୀପ୍ତକବା ଭଡଭ ଧ୍ୱଜ ବଢାଲ ଯେ । ସଂକୁଳରବ ଯୋଦ୍ଧାମାନଙ୍କ ଭେକ ଡ଼ାହୁକ ମୟୂରବତ୍ତାତ, କୋଦଣ୍ଡ କୁଣ୍ଡ ଇନ୍ଦ୍ରଧନୁ କି ଅତ୍ୟନ୍ତ ଦିଶିଲ ଯେ । ସଂକ୍ଷେପରେ ବାଟୁଲ କରକା ବୃଷ୍ଟି ଯେ । ସତ ଶତ୍ରୁନ୍ତ ଛହିଁ ହୋଇଲେ କଷ୍ଟି ଯେ । ଶାମୂକ ନାଦ ଘଣ୍ଟି ଗଢଦ, କବନ୍ଧନାଟ ରକ୍ତନଦ ଉଦ୍ଭୂତ ଯହିଁ କରେ ବିନୋଦ ଫଣୀ କର୍ଣ୍ଣୀ ଯେ ।

ସୁ ଃ ପ ଃ ପୃ ୩୫

† ଉତ୍ସବ୍ୟ ଗୋଷ୍ଠୀରେ ଗୁଣହୁଏ, ଓ ଭଗିନୀ, ଶିବଲିଙ୍ଗ , ଭଗବାନ ଇତ୍ୟାଦି ଅଶ୍ଳୀଳ ପଦ ଦୋଷ କଦ ନୁହେ ।

କୁସୁମ ପେଲବା ବାମା , ଏଠାରେ ପେଲବର କୋମଳ ଅର୍ଥ-ଥିଲେ ସୁଦ୍ଧା ଶ୍ରବଣ ମାତ୍ରେ ଲଜ୍ଜାର ବ୍ୟଞ୍ଜକ ହୋଇଅଛି , ଏପରି ଅଣ୍ଡ ଓ ବସ୍ତି ଇତ୍ୟାଦି ବ୍ୟବହାର କରି ଦୋଷାବହ ।

୨ ଘୃଣା

ଗୁହ୍ୟବାଣେ ତାରକ ହତହେଲା, ଏଠାରେ ଗୁହ୍ୟଶବ୍ଦ କାର୍ତ୍ତିକେୟଙ୍କୁ ବୁଝାଉ ଥିଲେସୁଦ୍ଧା ଶ୍ରବଣମାତ୍ରେ ଘୃଣାବ୍ୟକ୍ତକରିଥିବାରୁ ଅଶ୍ଳୀଳ ଦୋଷ ହେଲା ।

୩ ଅମଙ୍ଗଳ ଯଥା ।

ସେପିତୃ ସଦ୍ମକୁ ଗଲେ , ଏଠାରେ ପିତୃଗୃହକୁ ଗଲେ ଏ ଅର୍ଥ ହେଉଥିଲେ ସୁଦ୍ଧା ପିତୃ ସଦ୍ମ ଶବ୍ଦ ଶ୍ମଶାନକୁ ବୁଝାଉଥିବାରୁ ଅମଙ୍ଗଳର ବ୍ୟଞ୍ଜକହୋଇ ଅଛି ।

୩ ଅନୁଚିତତା

ଯେଉଁ ପଦ ପ୍ରୟୋଗ କଲେ ବର୍ଣ୍ଣନୀୟ ବିଷୟର ଅପକର୍ଷ ପ୍ରକାଶପାଏ, ତାହାକୁ ଅନୁଚିତତା କହନ୍ତି, ଯଥା ।

ଏହି ସ୍ତ୍ରୀ ତାହାର ପ୍ରିୟତମ କାହୁଶାଳାରେ କ୍ରୀଡା କୌତୁକୀ ବାନରୀ ହୋଇଅଛି , ଏଠାରେ ବାନରୀ ଶବ୍ଦ ପ୍ରୟୋଗ ଦ୍ୱାରା ସ୍ତ୍ରୀର ଅପକର୍ଷ ସାଧିତ ହଉଅଛି ।

୪ ଗ୍ରାମ୍ୟତା *

ସାଧାରଣ ଲୋକମାନଙ୍କ ବ୍ୟବହାର୍ଯ୍ୟ ଶବ୍ଦ ପ୍ରୟୋଗରେ ଗ୍ରାମ୍ୟତା ଦୋଷହୁଏ ଯଥା ।

" କୁମାର ପ୍ରସଙ୍ଗ ଶ୍ରବଣରେ ଏହା
ହସିବସି ଗଲା ପାଦ " ଓ

---

* ସ୍ତ୍ରୀ ବା ଅଧମ ଉକ୍ତିରେ ଏହା ଗୁଣ ଅଟେ । ଯଥା
" କେହି ନଶୁଣିଲେ ବାହୁନି୨ କଲଯୁ ଯେତେ ବିଳାପ । "
ଏଠାରେ ବାହୁନି୨ ପଦ ଗ୍ରାମ୍ୟଅଟେ , ଏହା କେବଳ ସ୍ତ୍ରୀ ଉକ୍ତିରେ ବ୍ୟବହାର ହୋଇଥିବାରୁ ଏଠାରେ ଗୁଣହୋଇଅଛି ।

" ଅଦ୍ଭୁତ ସ୍ୱପନ ଦେଖିଲି ବେଳୁଁ ମୋ
ମନ ହେଉଅଛି ଘାଣ୍ଟି ।"

ଉନ୍ମତ୍ତ କାବ୍ୟରେ ଉଦ୍ଧବଙ୍କ ଉକ୍ତିରେ ପାହ୍ର ଓ ଘାଣ୍ଟି ଶବ୍ଦ ଦ୍ୱାରା ଗ୍ରାମ୍ୟତା ଦୋଷ ହୋଇଅଛି ।

* ଅପ୍ରତୀତତା *

ଯେଉଁ ଶବ୍ଦର ଅର୍ଥ ଶାସ୍ତ୍ରାନ୍ତରକୁ ଅପେକ୍ଷା ନକଲେ ବୋଧ-ହୁଏନାହିଁ, ତାହାକୁ ଅପ୍ରତୀତତା ବୋଲଯାଏ । ଯଥା ।

ଅନ୍ଧାର ଗୃହରେ ଦୁର୍ବ୍ବୃକ୍ଷ ଦେଖି
ଭୂତ ଭ୍ରମ କଲ ଯାହା ।
କକୁଲ ଝଟକେ ପ୍ରମା ହେଲା ମୋର
ଭୂତର ନୁହଇ ତାହା ।

ଏଠାରେ ପ୍ରମାପଦ ଶାସ୍ତ୍ରାନ୍ତରକୁ ଅପେକ୍ଷା କରୁଅଛି । ଏଣୁ ଦୋଷାବହ ହୋଇ ଅଛି ।

ପୁନଶ୍ଚ, "ସମ୍ପତ୍ତି ଦାୟିକ ଦମ୍ପତି ତନୟଙ୍କ କାମୁକ ଦ୍ୱୟଙ୍କ ସମୟ ।
ଶୋଭିତା ପୁରେ ଧନଞ୍ଜୟ ପ୍ରବେଶ ଦେଖିଲେ ଉତ୍ତି ତନ୍ମୟ ।
ସୁବର୍ଣ୍ଣାଶିତ୍ୱ । ଶିକ୍ଷା ଦେଇ ଥିଲ କମୟ । ସୁଜାଣ ସଙ୍ଗୀଏ ଲେଖି-ଯାଉ ଛନ୍ତି ସବୁ ଉଦ୍ଦୀପନ ପ୍ରମେୟ ।" ସୁ: ପ ପୃ ୫୯

ଏଠାରେ ପ୍ରମେୟପଦ ନ୍ୟାୟଶାସ୍ତ୍ରାନଭିଜ୍ଞ ପକ୍ଷରେ ଦୁର୍ବୋଧ୍ୟ ଅଟେ

---

* ବକ୍ତା ଓ ଶ୍ରୋତା ଉଭୟଙ୍କର ରୁଚି ବାରଣକ୍ତି ଥିଲେ ଏହା ଗୁଣ ହୁଏ । ଯଥା ।

"ଧ୍ୟାନ ନାଶ ପାଇବାକୁ ଅଛି ଭାବବଶ,
ଦେଖ ଅସିଲଣି ଏବେ ଧ୍ରୁବ ମେରୁକୂଳ
ମେରୁ ନଭେ ସପ୍ତର୍ଷିର ସୁବର୍ଣ୍ଣ ବେଙ୍ଗଳା ,"

ଘ ୧୨ ଘଣ୍ଟାରେ ସପ୍ତର୍ଷି ଧ୍ରୁବକୁ ଏକବାର ପ୍ରଦକ୍ଷିଣ କରେ ଏହା ସମସ୍ତଙ୍କର ବୋଧଗମ୍ୟ ନୁହେଁ, ତେବେ ଏଠାରେ ବକ୍ତା ଓ ଶ୍ରୋତା ଉପଯୁକ୍ତ ପାତ୍ର ସତ୍ତ୍ୱେ ଗୁଣ ଅଟେ ।

୬ ସନ୍ଦିଗ୍ଧତା ※

ଯେଉଁ ଶବ୍ଦର ପ୍ରକୃତାର୍ଥ ଏବଂ ଅପ୍ରକୃତାର୍ଥ ଉଦ୍‌ଘଟନ କର ନୁହେ, ତାହାକୁ ସନ୍ଦିଗ୍ଧତା ବୋଲି ଯାଏ । ଯଥା ।

ଆହେ ଶୁଣ ବନ୍ଧୁଗଣ କ୍ଷଣେଙ୍କ ବି ମର୍ଷ ମନ
ଏହି ଦେଶ ସୁରାଳୟ କର ଗମନ ହେ ।
ତହିଁ ଯେବାକର ମନେ ପ୍ରଫୁଲ୍ଲ ଅତର
କ୍ରମେ ଆସକ୍ତି ବଢିବ ତୁମ୍ଭ ମନର ହେ ।

ଏଠାରେ ସୁରାଳୟ ପଦ ଦେବତାମନ୍ଦିର ଓ ମଦ୍ୟଶାଳା ଏହି ଉଭୟାର୍ଥ ବୁଝାଉ ଥିବାରୁ କେଉଁ ଅର୍ଥ ବକ୍ତାର ଉଦ୍ଦେଶ୍ୟ ବୁଝା-ଯିବାକୁ ନାହିଁ, ଏଣୁ ଦୋଷଅଟେ ।

୭ କଳ୍ପିତାର୍ଥତା ।

କବି ସଂକେତ କରି ଯେଉଁ ଭାବ ଓ ଅର୍ଥକୁ କଳ୍ପନା କର-ଥାନ୍ତି, ଅଥଚ କୌଣସି ଶକ୍ତି ଦ୍ୱାରା ସେ ଅର୍ଥ ସୁବୋଧ ହୁଏନାହିଁ, ତାହାକୁ କଳ୍ପିତାର୍ଥତା କହନ୍ତି । ଯଥା ॥

କଚ ଦୃଢ଼ିଁ କୁଚ କମ୍ପନ ହେଉଛି କୁଚ ଦେଖି କଚ କମ୍ପନ ।
ନୟନ ଲୋକନେ ବର୍ତ୍ତି ଭୟ ଦବେ ଦ୍ରବେ କଟି ଦେଖି ନୟନ ।

ଅନ୍ତ୍ୟ ଅନୁଭ ।

ସେ ଅଙ୍ଗେ ଅଶ୍ଚର୍ଯ୍ୟ ଅପାର ।
ଗତ ଦୃଢ଼ିଁ ଭୂଜ କମ୍ପନ ହେଉଛି ଭୂଜ ଦୃଢ଼ିଁ ଗତ ହାତର ॥

---

※ ଏହା ବ୍ୟାଜସ୍ତୁତି (ନିନ୍ଦା ଓ ଛଳନା ଉକ୍ତି)ରେ ଗୁଣହୁଏ । ଯଥା ହେ ଧର୍ମବତାର ମୋହର ଦଶର ପ୍ରତି ଅପଣ ଧର୍ମଗୃହଭାବ୍ୟ ଅବତାର ହୋଇ ଅଛନ୍ତି ।

ଏହି ବାକ୍ୟରେ ଯମ ପରିବର୍ତ୍ତରେ ତାହାର ପ୍ରତି ପଦ ଧର୍ମଗୃହ ଶବ୍ଦ ବିନ୍ୟାସ କରି ବକ୍ତା ନିନ୍ଦା ଗର୍ଭିତ ସ୍ତୁତି କରି ଥିବାରୁ ଗୁଣ ହୋଇଅଛି ।

କେଶ ପାଶକୁ ଦେଖି କୁଚ କମ୍ପିତ ହେଉଅଛି ଓ କୁଚକୁ ଚାହିଁ କେଶପାଶ କମ୍ପିତ ହେଉଅଛି । ନୟନକୁ ଦେଖି କଣ୍ଠ ଭୟ କରୁଅଛି । ଏବଂ କଣ୍ଠକୁ ଦେଖି ନୟନ ଭୟ କରୁଅଛି , ପୁଣି ଗମନକୁ ଦେଖି ବାହୁ କାତର ହେଉଅଛି , ଏବଂ ବାହୁକୁ ଦେଖି ଗତି କାତର ହେଉଅଛି ।

ଏଠାରେ ପ୍ରଥମ କଚ ଓ କୁଚରେ ଅନ୍ଧକାର ଓ ଚକ୍ରବାକର ଆରୋପ ।

ଦ୍ୱିତୀୟ କଚ ଓ କୁଚରେ ଅନ୍ଧକାର ଓ ଲୋକାଲୋକର ଆରୋପ ।

ପ୍ରଥମ ନୟନ ଓ କଟୀରେ ହରିଣ ଓ ସିଂହର , ଦ୍ୱିତୀୟ କଟି ଓ ନୟନରେ ସିଂହ ଓ ମୃଗର , ପ୍ରଥମ ଗତି ଓ ଭୁଜରେ ହସ୍ତି ଏବଂ ମୃଣାଳର , ଦ୍ୱିତୀୟ ଭୁଜ ଓ ଗତିରେ ଲତା ଓ ହସ୍ତିର ଆରୋପ ହୋଇଥିବା ଅର୍ଥ କୌଣସି ଶକ୍ତି ଦ୍ୱାରା ବୋଧ ନହେବାରୁ ଉପର ଲିଖିତ ଦୋଷର ସାର୍ଥକତା କରୁଅଛି ।

ପୁନଶ୍ଚ ।

ଅର୍ଜୁନବୃକ୍ଷ ପରିବର୍ତ୍ତେ କପିତ୍ଥବୃକ୍ଷ , ପଦ୍ମରାଗମଣି ପରିବର୍ତ୍ତେ କମଳ–ଲୋହିତମଣି , ବ୍ୟବହାର କଲେ ଉପରୋକ୍ତ ଦୋଷ ହୁଏ ।

୮—ଅସମର୍ଥତା ।

ଉକ୍ତସ୍ୱାର୍ଥ ବୋଧକ ଶବ୍ଦକୁ ଅପ୍ରସିଦ୍ଧ ଅର୍ଥରେ ବ୍ୟବହାର କଲେ ଅସମର୍ଥତା ଦୋଷ ହୁଏ । ଯଥା ।

ଦୟାଂ ବନ୍ଧ ଦୁଃଖିର ରକ୍ଷ ଜୀବନ ,
ଯେ ହେତୁ ଯୁକ୍ତ ଶ୍ଲୋକ ଅଟ ଆପଣ ।

ଏଠାରେ " ଶ୍ଲୋକ " ଶବ୍ଦ ପଦ୍ୟରୂପ ପ୍ରସିଦ୍ଧାର୍ଥରେ ବ୍ୟବହୃତ ନୋହି ଯଶ ରୂପ ଅପ୍ରସିଦ୍ଧାର୍ଥରେ ପ୍ରଯୁକ୍ତ ହୋଇ ଥିବାରୁ ଅସମର୍ଥତା ଦୋଷ ହୋଇଅଛି ।

୯—କ୍ଲିଷ୍ଟତା ।

ବହୁ ଶବ୍ଦ ବ୍ୟବହାର ଦ୍ୱାରା ଅତ୍ୟଳ୍ପ ଅର୍ଥ ଯେଉଁ ଠାରେ ପ୍ରକାଶ ହୁଏ , ସେଠାରେ କ୍ଲିଷ୍ଟତାଦୋଷ ହୁଏ । ଯଥା ।

ଋତୁଚନ୍ଦ୍ରାନନୀ ଚମ୍ପକବରଣୀ ବାଳା ଏହିବାଟେ ଗଲା ,
ଚନ୍ଦ୍ରଅବତଂସ ନନ୍ଦନ ଜନମ ତିଥିଚନ୍ଦ୍ର ମୋତେ କଲା ।

ଏଠାରେ ଚନ୍ଦ୍ରଅବତଂସ ଯେ ମହାଦେବ, ତାହାଙ୍କର ନନ୍ଦନଯେ ଗଣେଶ , ତାହାଙ୍କର ଜନ୍ମତିଥି ଚତୁର୍ଥୀ , ଚତୁର୍ଥୀ ଚନ୍ଦ୍ର ଯେ ହରିତାଳିକାଚନ୍ଦ୍ର ସେହିପରି ମୋତେକଲା ବା ମୋତେ ଅନାଇଲା ନାହିଁ,ଏପ୍ରକାର କ୍ଲିଷ୍ଟାର୍ଥ ପଦବିନ୍ୟାସ କାବ୍ୟର ବୈଗୁଣ୍ୟରୂପ ଅଟେ ।

୧୦—ବିରୁଦ୍ଧ ମତକାରିତା ।

ଯେଉଁ ଶବ୍ଦ ପ୍ରକୃତାର୍ଥର ପୋଷକ ହୋଇଥିଲେସୁଦ୍ଧା ଅନ୍ୟ ଅର୍ଥଦ୍ୱାରା ବିପରୀତମତିକୁ ଜନ୍ମାଏ , ସେଠାରେ ବିରୁଦ୍ଧମତକାରିତା ଦୋଷହୁଏ । ଯଥା ।

ଜାନକୀ ପିତା , ସମ୍ରାଜ୍ଞୀବଲ୍ଲଭ , ମୃଡ଼ାନୀପତି । ଜାନକୀପିତା = ଜନକପୁତ୍ରୀଙ୍କର ପିତା ; ସମ୍ରାଜ୍ଞୀବଲ୍ଲଭ = ସମ୍ରାଟଙ୍କର ସ୍ତ୍ରୀଙ୍କର ସ୍ୱାମୀ ; ମୃଡ଼ାନୀପତି=ମୃଡ଼ ( ଶିବ ) ଙ୍କ ପତ୍ନୀଙ୍କର ପତି ଏହିରୂପ ଅର୍ଥ ଦ୍ୱାରା ବିରୁଦ୍ଧମତ ଅର୍ଥାତ୍ ଜାନକୀଙ୍କର ଅନ୍ୟପିତା ଥିଲାପରି ସମ୍ରାଜ୍ଞୀ ଏବଂ ମୃଡାନୀ ଏମାନଙ୍କର ଅନ୍ୟବଲ୍ଲଭ ଥିଲାପରି ବିଷମ-ବୁଦ୍ଧି ଜନ୍ମାଉଅଛି ।

୧୧—ଅସାଧୁତା ।

ଯେଉଁ ପଦରେ ବ୍ୟାକରଣର ଦୋଷ ଥାଏ,ସେଠାରେ ଅସାଧୁତାଦୋଷ ହୁଏ ।

ଯଥା ।

ସର୍ବ ମତରେ ସମ୍ମତ ଏମନ୍ତ ପର୍ବତ ପରେ ଜାତ ଲତା ।
ଲତାରୁ ଏବେ ପର୍ବତ ତାଡ଼ିଲେ ଶୁଣ୍ଢ କର୍ଣ୍ଣେ ଉର୍ଦ୍ଧ୍ୱ ବେଢା ,
ତାହା ଶୋଭିତା । ଦେଖି ଦେବେନ୍ଦ୍ରାଦି ଲୋଭିତା ।





କରପରେ କର କରପରେ କଣ୍ଠ ଚଢାଇଲାଏବେ କଳତା ॥

ଏଠାରେ ଲୋଭିତା ପଦ ପ୍ରୟୋଗରେ ଉପରୋକ୍ତ ଦୋଷ ହୋଇଅଛି ।

ଏହିପ୍ରକାର ଶ୍ରୁତିକଟୀ , ସୁଟକେଶିନୀ , ଅନାଥିନୀ , ଇତ୍ୟାଦି ।

୧୨—ଅନନୁଗୁଣତା ।

ରଚନା ରସର ଅନୁରୂପ ନୋହିଲେ ଅନନୁଗୁଣତା ଦୋଷହୁଏ । ଯଥା । କମ୍ବୁକଣ୍ଠୀ ଅଙ୍କୁଶୋଲ୍ଲଣ୍ଠା ଦ୍ୱାର କୁଣ୍ଠିତ ଇତ୍ୟାଦିବାକ୍ୟ ରସର ଅନୁରୂପ ନୁହେ ।

୧୩—ପୁନରୁକ୍ତତା । ✱

ଏକାର୍ଥକ ଶବ୍ଦ ଦୁଇ ବା ତତୋଧିକ ବାର ଏକ ବାକ୍ୟରେ ବ୍ୟବହୃତ ହେଲେ ପୁନରୁକ୍ତତାଦୋଷ ହୁଏ । ଯଥା ।

କପୋଲ ଦିଶୁଛି ଲମ୍ବି ମୁକ୍ତାହାର କମ୍ବୁକଣ୍ଠୀ କମ୍ବୁ କଣ୍ଠରେ ।

ଏଠାରେ କମ୍ବୁକଣ୍ଠୀ ଓ କମ୍ବୁ କଣ୍ଠ ଦୁଇବାର ପ୍ରୟୋଗ ହେତୁ ପୁନରୁକ୍ତତା ବା ଦ୍ୱିରୁକ୍ତି ଦୋଷହେଲା ।

---

✱ ନିମ୍ନ ଲିଖିତ ସ୍ଥଳରେ ଏହା ଗୁଣହୁଏ । ଯଥା ।

ବିଷାଦ

ଲୋକେ ଯେ ବୋଲନ୍ତି ଜନମ ଲଭଇ
ଗୃହକୁଳେ ଭାଗ୍ୟବାନ ।
ଧିକ ମୋ ଜନମ ଧିକ ଗୃହକୁଳ
ଧିକସେ ଲୋକ ସମ୍ମାନ ।

ଏଠାରେ ଧିକ ଶବ୍ଦ ବହୁବାର ବ୍ୟବହାର ହୋଇଥିବାରୁ ଗୁଣଅଟେ ।

ହର୍ଷ

ଧନ୍ୟ ଧନ୍ୟ ତୋର ଅପୂର୍ବ ସୁଷମା ।
ଯାହା ଦେଖି ଦେଖି ନ ବୁଡେ ଚନ୍ଦ୍ରମା ॥




 



୧୪—ଯତିଭଙ୍ଗ

ଯଦ୍ୟପି ପଦ ମଧ୍ୟରେ ଯତିର ବିଶ୍ରାମ ହୁଏ , ତେବେ ଯତି ଭଙ୍ଗ ଦୋଷହୁଏ । ଯଥା ।—

ହର୍ଷ

ଜୟ ଜୟ ସିଂହ-ବାହିନୀ ଜଗତେ
ବୋଲି ସର୍ବେ ଉଚ୍ଚୈଃ ସ୍ୱରେ ।
ବୈତରଣୀ ତୀର-ବାସିନୀ ଦେବୀଙ୍କି
ପ୍ରଣମିଲେ ଭକ୍ତି ଭରେ ॥

ଦୀନତା

"ଥାଉ ଖଣ୍ଡେ , ଥାଉ ଖଣ୍ଡେ , ହାତ ହଲେଇଥିଲ
ବାଷ୍ପାକୁଳ—ନେତ୍ରେ ବାଷ୍ପ ଗଦ୍ଗଦ ବଚନେ"

ଅରସିକେ ବଧି ? ସରସ ରଚନା
ହାୟ ବାକୁ ଘଟେ ଲେଖକ ଲେଖନୀ ॥

କ୍ରୋଧ

ଧର ଧର ମାର ମାର ଯେ ଶୁଭୁଛି କୁବାଣ୍ଠ ।
ଅସ୍ତୁ ଛତ୍ର ଶତ୍ରୁମୁଣ୍ଡେ ବିଜୟୀ ସମ୍ରାଟ ॥

ଅବଧାରଣ

ଶୁଣ ଶୁଣ ସାଧୁ ଜନ ହୋଇ ଏକ ମନ ।
କରୁ ଅଛି ଶ୍ରୀକୃଷ୍ଣଙ୍କ ଚରିତ ବର୍ଣ୍ଣନ ॥

ଅନୁକରଣ ଶବ୍ଦରେ ଏହା ସର୍ବଥା ଗୁଣ ହୁଏ । ଯଥା :

ଚଣ୍ଡିକାନ୍ତ-କାନ୍ତି ଦଳର ହୃଦୟ ମର୍ଦ୍ଦନୀ ।
ଶୁଭିଲା ଏକାଳେ ହଠାତ୍ ଦୁଡୁମ୍ ଦୁଡୁମ୍ ଧ୍ୱନି ॥

ପୁନଶ୍ଚ

ଫଟେଇମ ଫାଳ ଫାଳ କାପୁରୁଷ ମସ୍ତକ ।
ଝର ଝର ବାହାରୁଛି ରକ୍ତ ଭକ ଭକ ॥

 

ଗୃଗ କୌଶିକ ।

ରସିକେ ଦୃଷ୍ଟି ବେଳମ୍ବରୁ ଗୋଚନ ଘନୂଅବଣ ହୋଇଲାଣି ।
ଦୃଷ ଦୁର୍ଲ୍ଲଭ ଦୁନୂଭ ଦୁ ପୂର୍ବୋଦ୍ଧ ଭ୍ରଷାରେ ଅଣାହୋଇଲାଣି ।
ସେହି ହାଲକୁ ।
ଦୃଷ୍ଟି ସେଠାରୁ ଅଇଲାଣି ।
ଛାଡଥିଲ ମୂର୍ଖ ଦେଖି ହରହୃଦେ ଆନନ୍ଦ ଚନ୍ଦ୍ର ଉଁଇଲାଣି ॥

ଏଠାରେ " ଦୃଷ୍ଟି , ଜଳମ୍ବରୁ " ଏହି ଦୁଇଗୋଟି ପଦ ସ୍ୱତନ୍ତ୍ର ଥିବାସତ୍ତ୍ୱେ ପଦର ଅନ୍ତରେ ଯତି ନରହି " ଦୃଷ୍ଟିବ " ରେ ନହି " ଦୃଷ୍ଟି ବ " ଓ " ଲମ୍ବରୁ " ପଦ ବିଭାଗ କରୁ ଥିବାରୁ ଦୋଷାବହ ହୋଇଅଛି ।

୧୫—ନ୍ୟୂନ ପଦତା

ଅବଶ୍ୟକ ପଦ ଅଭାବ ହେଲେ ନ୍ୟୂନପଦତା ଦୋଷହୁଏ ।

ଯଥା — ହେ ସାଗର ତବ ବନ୍ଧୁର୍ଣ୍ଣି ଆକାର ,
ଦେଖିଲେ ହୃଦୟ ଆନନ୍ଦ ଅପାର ,
ଏ ବିଶାଳ ରୂପ ଅଦ୍ଭୁତ କାହାର ମେଦନୀ ମଣ୍ଡଳେ ଭଣେ ।

କବିତା ବ: ୨ୟ ଭାଗ

ଏଠାରେ " ଦେଖିଲେ ହୃଦୟ ଅପାରଆନନ୍ଦ ହୁଏ " ପ୍ରସଙ୍ଗତ, କିନ୍ତୁ " ହୁଏ " ଏହିପଦର ଅଭାବ ଦେଉଥିବାରୁ ନ୍ୟୂନପଦତା ଦୋଷହେଲା ।

୧୬—ପତତ୍-ପ୍ରକର୍ଷତା

ଅନୁପ୍ରାସ ରକ୍ଷାକରି ନପାରିଲେ ପତତ୍—ପ୍ରକର୍ଷତା ଦୋଷ ହୁଏ । ଯଥା ।

ଶୁଣ ସାବଧାନେ ସୁଜନ ଜନ ।

ସର ଗ୍ରୀଷମ ବରଷା ଭଞ୍ଜନ ॥
ଶୁଭ୍ର ଘନାଘନ ଘନ ଘନ ।
ସ୍ୱନ ସବୁ ଦଶେ ଅଳ ବଛନ୍ତ ॥
ସୂର ମାର୍ଗ ଗ୍ରାସି ।
ସୁଧା ଭାନୁ ଭାନୁ ଭାନୁ ନ ଦିଶି ॥

ସୁଭଦ୍ରା ପରିଣୟ ପୃ ୯୧

ପଞ୍ଚମ ପାଦରେ ଅନୁପ୍ରାସ ରକ୍ଷାହୋଇ ପରି ନାହିଁ । ।

୧୭—ଦୂରାନ୍ୱୟ

ଅନ୍ୱୟ କଷ୍ଟହେଲେ ଦୂରାନ୍ୱୟ ଦୋଷ ହୁଏ । ଯଥା ।

ପ୍ରାଣେଶ ପ୍ରେମ ହୋଇ ବରଦ୍ରବତା
ଲେଭଇ ଯେ ନାରୀ ଜଳ ଅନଳ
ଦେବାଳୟ ସୁଧା ହୁଏ ସେ ପ୍ରମଦା-
ପାନପକ୍ଷେ ସଦା କାଳ ଗରଳ ।

ସୁମିତ୍ରା ପୃ ୬ ଷ୍ଠା

୧୮—ଅକ୍ରମତା

ରଚନାର କ୍ରମ ଭଙ୍ଗହେଲେ ଅକ୍ରମତା ଦୋଷହୁଏ । ଯଥା ।

ସୁଖେ ଗୃହ୍ୟ ଭୋଗକର ଧର୍ମକୁ ସୁମର ,
ବଦ୍ଧବର ଏମନ୍ତ ଦ୍ୱାରକା ଗଲେ ହର ।

ଏଠାରେ " ଏମନ୍ତ ବଦ୍ଧବର " ଉଲ୍ଲିଖିତ ହୋଇଥିଲେ ସୁସଙ୍ଗତ ହୋଇଥାନ୍ତା ।

୧୯—ସମ୍ବନ୍ଧ ଭ୍ରମକାରିତା

ସମାସ ହେତୁ ପଦ ସହିତ ପଦାନ୍ତରର ସମ୍ବନ୍ଧ ଯେଉଁ ବାକ୍ୟରେ ଲୁପ୍ତ ନ ଥାଏ ସେଠାରେ ସମ୍ବନ୍ଧଭ୍ରମକାରିତା ଦୋଷହୁଏ । ଯଥା

କଳୁଷ ନଦୀ ଜଳରୁ ଉଠିଲେ ।
କମଳ କୁମୁଦ ମାନେ ଫୁଟିଲେ ॥

ର : କ : ୬୪

ଏଠାରେ କଳୁଷ ପଦ ଜଳର ବିଶେଷଣ ସତ୍ତ୍ୱେ ନଦୀର ବିଶେଷଣ ପରି ଆସିଥିବାରୁ ଉପରୋକ୍ତ ଦୋଷ ହୋଇଅଛି ।

୨୦ ପ୍ରସିଦ୍ଧିତ୍ୟାଗ

ଯେ ଶବ୍ଦ ଯହିଁରେ ପ୍ରଯୋଜ୍ୟ, ସେ ଠାଇଁରୁ ଭିନ୍ନହେଲେ ଉପରୋକ୍ତ ଦୋଷହୁଏ ।

ଯଥା —

ଦେଖ ମେଘ ଘୋର ରବ କରୁଅଛି ଅଜ
ବିରହୀ ପ୍ରାଣ ନେବାକୁ ହେଉଛି କି ? ସଜ

ମେଘରେ "ରବ" ଶବ୍ଦ ଯୁକ୍ତ ନୁହେଁ । ଯେହେତୁ ଦୁଷ୍ଟପକ୍ଷିମାନଙ୍କର କୂଜନରେ ରବଶବ୍ଦ ପ୍ରଯୋଜ୍ୟ ।

ଅର୍ଥଦୋଷ

| | |
|---|---|
| ୧ ଅପୁଷ୍ଟ | ୫ ଅଶ୍ଳୀଳ |
| ୨ ଦୁଷ୍କ୍ରମ | ୬ ଖ୍ୟାତି ବିରୁଦ୍ଧତା |
| ୩ ଗ୍ରାମ୍ୟ | ୭ ବିଦ୍ୟା ବିରୁଦ୍ଧତା |
| ୪ ବ୍ୟାହତ | ୮ ପ୍ରକାଶିତ ବିରୁଦ୍ଧତା |

୧ ଅପୁଷ୍ଟ—

ଯେଉଁ ଅର୍ଥ ମୁଖ୍ୟଉଦ୍ଦେଶ୍ୟକୁ ପୁଷ୍ଟ ନକରେ, ତାହାକୁ ଅପୁଷ୍ଟତା ଦୋଷ ବୋଲନ୍ତି । ଯଥା ।

ସୁରଙ୍ଗ ଅଧର ଅଗ୍ରସ୍ଥ ରଙ୍ଗ ଦନ୍ତ ଦନ୍ତ ହେଲା ତହିଁ ।
ସିନ୍ଦୂରରେ ସ୍ନାନ କରିବ ଅରୁଣ ପୁଣି ମନ୍ଦହାସେ ଶୋହ ।
ସ୍ୱର୍ଣ୍ଣାନୁ ଅଳକା ସାଜିବା ଦେଖିକି ମାଣିକ୍ୟ-କୂପରେ ପଶି
ସବୁ ପ୍ରକାରେ ଗୁପତ ହେଉଅଛି ଝଟକ ମାନଙ୍କ ଦଶି

ସୁଭଦ୍ରାପରିଣୟ ପୃ ୬

ଏଠାରେ ସୁରଙ୍ଗ ବିଶେଷଣ ଦ୍ୱାରା କବିତାର ଅର୍ଥର କୌଣସି ପୁଷ୍ଟି ସାଧନ ହେବାକୁ ନାହିଁ, ଅଧିକ କହିଥିଲେ ଯଥେଷ୍ଟ ହୋଇ-

ଥାନ୍ତା । ଯେହେତୁ ପରେ ଦିନୁଦିନୁ ରଙ୍ଗହେବା ବର୍ଣ୍ଣିତ ହୋଇ ଅଛି ଏହେତୁରୁ ଅପୁଷ୍ଟତା ଦୋଷହେଲା ।

୨ ଦୁଷ୍କ୍ରମ—

ଅର୍ଥକଥନର କ୍ରମଭଙ୍ଗହେଲେ, ଦୁଷ୍କ୍ରମ ଦୋଷ ହୁଏ । ଯଥା

ପିଇଲେଜୁଥିବ ପଣା ପରିବେ ସ୍ୱେଚ୍ଛ ଅଗଣା ମଣ୍ଡାପର ସୁଣ୍ଡ ଗେହ୍ଲାଇଲେ ଯେ ॥ ଲାବଣ୍ୟବତୀ ୧୨୩

ଏଠାରେ ପ୍ରଥମେ ପିଇବା ଦ୍ୱିତୀୟେ ଗେହ୍ଲାଇବା ବର୍ଣ୍ଣନାଥିବାରୁ ଦୋଷାବହଅଟେ । ଯେହେତୁ ଚର୍ବଣପରେ ପିଇବା କ୍ରମଅଟେ ॥

ପୁନଶ୍ଚ

ଯହିଁ ସିନ୍ଧୁର କୋହଳ ଭର ବସାନ୍ତେ ବ୍ରହ୍ମଅଶ୍ୱ ଗୁଣର,
ଦେଖିଣ କମ୍ପିଲେ ନାଗ ନର ସୁର ଅସୁର ଯେ ।
ଛଚଷ ରାମାୟଣ ପୃ ୧୬୧

ଏଠାରେ ନର ସୁର ବୋଲିବା ଦ୍ୱାରା କ୍ରମଭଙ୍ଗ ହୋଇଅଛି । ସୁର ନର ବୋଲିଥିଲେ ଉଚିତ ହୋଇଥାନ୍ତା ।

୩ ଗ୍ରାମ୍ୟ—

କାବ୍ୟର ଚମତ୍କାରିତା ନଥିଲେ ଗ୍ରାମ୍ୟ ଦୋଷହୁଏ । ଯଥା ॥

ବାଳକ ବାଳକା ଧରିଣ ଶୃଙ୍ଗାର ।
ଫୁଲ ତୋଳୁଛନ୍ତି ଦଉଡ ଦଉଡ ।

୪ ବ୍ୟାହତ—

ପଦାର୍ଥର ବରୁଦ୍ଧାର୍ଥ ସ୍ଥଳେ ବ୍ୟାହତ ଦୋଷହୁଏ । ଯଥା ॥

ଶୁଣିଛି ଚନ୍ଦ୍ରବଦନ ; ଶରତେ ନୀର ଲୋଚନ
ତେବେହେଁ ତୋହରୁ ଉପମା ଦେବାକୁ ନାହିଁନା ସର୍ବଭୁବନ ॥
ନାଗରଞ୍ଜନ ॥ ଛ : ଗ : ପୃ ୯୨

ଏଠାରେ ଚନ୍ଦ୍ରବଦନ ରୂପ ଉପମାଦେଇ ସୁଦ୍ଧା ତ୍ରିଭୁବନରେ ଉପମା ଦେବାକୁ ନାହିଁ ବୋଲି ବର୍ଣ୍ଣିତ ହେବାରୁ ପୂର୍ବାପର ଅର୍ଥ ବିରୁଦ୍ଧହୋଇ ବ୍ୟାହତଦୋଷହେଲା ।

୫ ଅଶ୍ଳୀଳ—

ବାକ୍ୟରୁ ଅଶ୍ଳୀଳାର୍ଥ ଅଣସୁଥିଲେ ଉକ୍ତ ଦୋଷହୁଏ । ଯଥା

ଚଣ୍ଢୋପୂଳା ଷଣ୍ଢଁ ବସ୍ତ୍ରାରି ପଯ୍ୟନ୍ତ
ଗଳାଇ ତାକୁ ମଧ୍ୟରେ
ଅସି ତୋପାଗରେ ମିଳନ୍ତେ ସେସ୍ୱେଚ୍ଛେ
ବସାଇ ଅଙ୍କୁ ଅଙ୍କରେ ॥

ଉ : ଲ : ପୃ ୮

ଏଠାରେ ଚଣ୍ଢୋପୂଳା କାମୁକ ଯକ୍ଷକୁ ତେଲିଁକର ବାହାର ସଲେ ଏଅର୍ଥଥିଲେ ହୁଦ୍ଧା, ଦୁରୁପଯୁକ୍ତ ବସ୍ତ୍ରାର ମଧ୍ୟରେ ଗଳାଇ ଲେ * ଏହ୍ୱ ଅଶ୍ଳୀଳାର୍ଥ ବ୍ୟକ୍ତ ହେଉଥିବାରୁ ଅର୍ଥରେ ଅଶ୍ଳୀଳ ଦୋଷହେଲା ।

୬ ଖ୍ୟାତ ବିରୁଦ୍ଧତା ※

ଯେଉଁ ଅର୍ଥ ପ୍ରଶସ୍ତିର ବିରୁଦ୍ଧହୁଏ, ତାହାକୁ ଖ୍ୟାତ ବିରୁଦ୍ଧତା ବୋଲିଯାଏ । ଯଥା ।

ନିଦାଘ ତୃଷାର୍ତ୍ତ ପୀଡ଼ିତ ଚାତକ ।
ଭିନ୍ନକ ଦେଖଇ ପଲ୍ୱଲ ଉଦକ ॥

ଚାତକ ପଲ୍ୱଲ ଉଦକ ପାନକରିବାର ପ୍ରଶସ୍ତି ବିରୁଦ୍ଧଅଟେ ।

୭ ବିଦ୍ୟା ବିରୁଦ୍ଧତା—

ଯେଉଁ ଅର୍ଥ ଶାସ୍ତ୍ରର ବିରୁଦ୍ଧହୁଏ , ତାହାକୁ ବିଦ୍ୟାବିରୁଦ୍ଧତା ବୋଲିଯାଏ । ଯଥା ।

କୁଞ୍ଜେ କୁଞ୍ଜେକପି ଝିଙ୍କାରି ତାବଲେ କମଳେଲ ବାଟପଡିଲ ।

ର : ଭ : ପୃ ୫୩

---

※ ନିମ୍ନଲିଖିତ ବିଷୟ କବି ସମ୍ମତଅଟେ ।

ନୂପୁରରେ ନିକ୍ୱଣ ଓ ରଣିତ , ପକ୍ଷି ମାନଙ୍କଠାରେ କୂଜନ, ମେଘରେ ଗର୍ଜନ, ପାପ ଏବଂ ଅନ୍ଧକାରର ମଳିନତା ,ହାସ ଏବଂ

ଏଠାରେ ଝିଙ୍କାରି ଜାଣିବା ଶାସ୍ତ୍ର ବିରୁଦ୍ଧଅଟେ, ଯେହେତୁ ଝିଙ୍କାରି ଝିଙ୍କାର ଶାସ୍ତ୍ର ସମ୍ମତ ।

ପୁନଶ୍ଚ ।

କାମିନୀମାନେ ହୋଇ ଯୂଥ ଯୂଥ
କରନ୍ତେ ଗମନ ନପାନ୍ତି ପଥ

ର : କ : ପୃ ୬୬

ଏଠାରେ "କାମିନୀ ଯୂଥ ଯୂଥ" ଏହା ବୋଲିବା ବିଦ୍ୟାବିରୁଦ୍ଧ ଅଟେ । ଯେହେତୁ ମୃଗାଦି ପଶୁଜାତିରେ ଯୂଥଶବ୍ଦ ପ୍ରୟୋଗଯୋଗ୍ୟ ।

୮ ପ୍ରକାଶିତ ବିରୁଦ୍ଧତା

ଯେଉଁ ଅର୍ଥରୁ ବିରୁଦ୍ଧାର୍ଥ ପ୍ରକାଶପାଏ, ତାହାକୁ ପ୍ରକାଶିତ ବିରୁଦ୍ଧତା ବୋଲଯାଏ । ଯଥା ।।

ହେ ମହାରାଜ ! ଆପଣଙ୍କର ପୁତ୍ର ଗୃହଲକ୍ଷ୍ମୀ ପ୍ରାପ୍ତହେଉନ୍ତୁ । ମୁଁ ଏହି ଆଶିର୍ବାଦ କରୁଅଛି ।

ଏଠାରେ ପ୍ରକାରାନ୍ତରରେ ରାଜାଙ୍କର ନାଶଅର୍ଥ ବୋଧହେଉଅଛି, ଏଣୁ ଏହା ଦୋଷାବହ ଅଟେ ।

---

## ରସଦୋଷ

ଯଦ୍ୱାରା ରସର ହ୍ରାସହୁଏ ତାହାକୁ ରସଦୋଷ ବୋଲଯାଏ । ଏହା ସ୍ଥୂଳତଃ ପାଞ୍ଚପ୍ରକାର ଯଥା ।

୧ ଧରେସ୍ୱ ରସାଙ୍ଗ ବର୍ଣ୍ଣନା

---

ଯଶର ଶୁକ୍ଳତା, କ୍ରୋଧ ଏବଂ ଅନୁରାଗର ରକ୍ତତା, ନଦୀରେ ପଙ୍କଜାଦି, ପଦ୍ମିନୀସ୍ତ୍ରୀର ପାଦାଘାତଦ୍ୱାରା ଅଶୋକ ପୁଷ୍ପିତ ହେବା, ସ୍ତ୍ରୀର ମୁଖମଦ୍ୟ ଦ୍ୱାରା ବକୁଳ ପୁଷ୍ପିତ, ଚକୋରର ଜ୍ୟୋସ୍ନା ପାନ, ଯୁବକ ମାନଙ୍କର ହାରହତାଶହେତୁ ମୁକ୍ତାହାର ତୁଟନ, ଦିବସରେ ପଦ୍ମ ଓ ରାତ୍ରିରେ କୁମୁଦର ବିକାଶ, ବର୍ଷା କାଳରେ ମାନସସରୋବରକୁ ହଂସ ମାନଙ୍କର ଗମନପ୍ରଭୃତି ବର୍ଣ୍ଣନା କରିବାର କବିସମ୍ମତ ଅଟେ ।

୨ ଅନବସରରେ ରସର ପ୍ରକାଶ ଓ ହ୍ରାସ
୩ ରସର ପୁନରୁତ୍ଥାପନ
୪ ରସାଙ୍ଗର ଅତିବିସ୍ତୃତି
୫ ପ୍ରକୃତି ବିପର୍ଯ୍ୟାସ

୧ ବିରୋଧି ରସାଙ୍ଗ ବର୍ଣ୍ଣନା—

ଯେଉଁ ବର୍ଣ୍ଣନାରେ ବର୍ଣ୍ଣନୀୟ ରସର ବିରୋଧି ରସାଙ୍ଗ ବର୍ଣ୍ଣିତ ହୁଏ । ଯଥା ।

କୁମାରୀ ହୋଇଯେ ବାଞ୍ଛୋଇଥିଲ ଏବେ ସୁଧବା ବନା ?
ବିଧବା ମାନଙ୍କୁ ଶୁଭ କର୍ମରେ ଗୋ ! ବାରଣ ଅଛଇ ଜିନା

❋ ❋ ❋ ❋ ❋ ❋ ❋ ❋ ❋

❋ ❋ ❋ ❋ ❋ ❋ ❋ ❋ ❋ ❋

ଉଷା ମଣ୍ଡପକୁ ଯିବେ ଦୋଲ ଦେଇ ହେଉଛନ୍ତି ସଜବାଜ
ସଜ ଦେଖି ତାହା ମନ ନ ମୋହିବ ଚନ୍ଦ୍ରମା ପାଇବେ ଲାଜ

ସୁଲୋଚନା ପୃ ୭୯

ଏଠାରେ ଦୁଃଖ ବିଧୁର ସୁଲୋଚନାର ପକ୍ଷେ ଚନ୍ଦ୍ରଲୁଣ୍ଠିତ ସଜବାଜବର୍ଣ୍ଣନା ଅସଙ୍ଗତ ।

୨ ଅନବସରରେ ରସର ପ୍ରକାଶ ଓ ହ୍ରାସ

ବର୍ଣ୍ଣନୀୟ ରସ ମଧ୍ୟରେ ଅପର ରସର ଅପ୍ରାସଙ୍ଗିକ ଭାବ ରେ ବର୍ଣ୍ଣନା କଲେହେଲେ, ଅନବସରରେ ରସର ପ୍ରକାଶ ଓ ହ୍ରାସ ହୁଏ ଯଥା ।

ଶୁଭେ ଦୁନ୍ଦୁଭିନାଦ ନିରତ ଏମନ୍ତେ ହେଲେ ଦିବସ ଅନ୍ତ ଜଳଦ ବୃଦ୍ଧି ଚରନ୍ତ ଦେଇବା ଗୃଧ୍ରୀ ପ୍ରବେଶେ ଯେ । ସେନାମାନଙ୍କ ଦର୍ପକୁ ଦଣ୍ଡି ତାହାର ଥିଙ୍କି କୃପାଣେଗଣ୍ଡି ଦେଖି ଭାଙ୍ଗିଲେ ପଦାତି ଚୂର୍ଣ୍ଣୀଭୂତ ସହାସେ ଯେ । ଶସ୍ତ୍ର ଗୁଡ଼ାଇ କ୍ଷେତ୍ରପାଳଙ୍କ କଲୁ ଯେ । ଧନ୍ଦ ସ୍ୱରୂପ ଧରି ସେ ଭସ୍ମ କରନ୍ତି ଯେ । ସମ୍ମିତ୍ରେ ମଖ ସଦନେ ପଶି ତର୍ପଣ ଜଳ ବହନ୍ତି ରଶ୍ମି ଅନଳେ ଗ୍ରାମକୃଷ୍ଣ ଜାତେଶି ଅତିକ୍ରୋଧରୁ ଯେ ॥

ସଭ୍ୟସମାଜକୁ ଏକ୍ଷଣେ ତହୁଁ ଅସୁର ଗୃହଁ ହୋଇଲା ମୋହ ଭାବିଲା ପୂର୍ବେ ନଥିଲା ନାହିଁ ହୋଇବ ପୁଣି ଯେ । ସମ୍ପୂର୍ଣ୍ଣ ସୌଭାଗ୍ୟ ସୁକେଶୀ ଚକ୍ଷାଶକାଶ ଶର୍ପର ହାସେ, ଜନ ମାନସ ମୋହନ ପାଶୀ, ରମଣୀମଣି ଯେ । ସରସିଜ ଦର୍ପଣ ଚନ୍ଦ୍ରବଦନା ଯେ । ସୁହାସକ କରକ କୁନ୍ଦରଦନା ଯେ । ସିନ୍ଦୂର ବାଳ ଘନ ପ୍ରବାଳ ବିମ୍ବ ବିଦ୍ରୁମ ନବ ପ୍ରବାଳ ବନ୍ଧୁଜୀବକ ଛବିହସନ୍ତି ରଦ ଛଦନା ଯେ ।

ସୁଭଦ୍ରାପରିଣୟ ପୃ ୩୩

ଏଠାରେ ଦୁର୍ଦ୍ଦମ ସଂଗ୍ରାମବର୍ଣ୍ଣନ ଅବସରେ ଦୈତ୍ୟର ସଭ୍ୟ-ସମାଜପ୍ରତି ଆସକ୍ତି ସ୍ୱରୂପ ଶୃଙ୍ଗାର ରସ ବର୍ଣ୍ଣନ ଅନୁଚିତ ।

୩ ରସର ପୁନଃ୨ ଉତ୍ଥାପନ । ଯଥା ।

ଗୋଟିଏ ରସ ପୁନଃପୁନଃ ବର୍ଣ୍ଣିତହେଲେ ରସର ପୁନଃପୁନରୁତ୍ଥାପନ ଦୋଷହୁଏ । ଯଥା ।

ସୁଲୋଚନାର କ୍ରନ୍ଦନ

୪ ରସାଙ୍ଗର ଅତିବିସ୍ତୃତି

ମୁଖ୍ୟରସର ବର୍ଣ୍ଣନା ଅପେକ୍ଷା ଅଙ୍ଗସ୍ୱରୂପ ଅନ୍ୟରସର ବର୍ଣ୍ଣନ ବିଶେଷ ବା ଅଧିକ ହେଲେ, ରସାଙ୍ଗର ଅତିବିସ୍ତୃତି ହେଲବୋଲି ବୁଝାଯିବ ।

୫ ପ୍ରକୃତି ବିପର୍ଯ୍ୟାସ

ବର୍ଣ୍ଣନାଦ୍ୱାରା ନାୟକ ନାୟିକାର ଗୁଣରେ ଦୋଷ ଲକ୍ଷିତ ହେଲେ ପ୍ରକୃତିବିପର୍ଯ୍ୟାସ ଦୋଷ ହୁଏ ।

---

## ୬ଷ୍ଠ ପରିଚ୍ଛେଦ ।

ଗୁଣ ।

ଯାଦୃଶ ରଚନା ଦ୍ୱାରା ରସର ଉତ୍କର୍ଷ ସାଧିତ ହୁଏ, ତାହାକୁ

ଗୁଣ କହନ୍ତି । ଏହି ଉତ୍କର୍ଷ କାବ୍ୟର ବର୍ଣ୍ଣଗତ ହୁଏ, ଏହା ତିନ ପ୍ରକାର ; ଯଥା ।

୧—ମାଧୁର୍ଯ୍ୟ ।

୨ ଓଜ ।

୩ ପ୍ରସାଦ ।

୧ ମାଧୁର୍ଯ୍ୟ ।

ଏହି ଗୁଣ ଶୃଙ୍ଗାର କରୁଣ ଓ ଶାନ୍ତ ରସର ଉପଯୋଗି ଅଟେ ।

ଟବର୍ଗ ( ଟଠଡଢଣ ) ବ୍ୟତୀତ ଅପର ବର୍ଗର ଅକ୍ଷରମାନଙ୍କର ସହିତ ବର୍ଗାନ୍ତ୍ୟ ବର୍ଣ୍ଣ ( ଙଞଣନମ ) ଯୋଗ ହୋଇ ମଧୁର ଅଳ୍ପ ସମାସ ବା ଅସମାସ ରଚନାରେ ପ୍ରକାଶ ପାଏ । ଯଥା ।

ଙ+କ=ଙ୍କ, ଙ+ଖ=ଙ୍ଖ, ଙ+ଗ=ଙ୍ଗ, ଙ+ଘ=ଙ୍ଘ

ଞ+ଚ=ଞ୍ଚ, ଞ+ଛ=ଞ୍ଛ, ଞ+ଜ=ଞ୍ଜ, ଞ+ଝ=ଞ୍ଝ

ଇତ୍ୟାଦି ।

ଟ ଠ ଡ ଢ ଏହି ଗୁଣର ଉପଯୋଗୀ ନୁହନ୍ତି । ଯଥା ।

ଯେବେନେ ନୟନେ ଅଙ୍ଗ ଶୋଭା ତୋର
ଦେଖିଲି ମୟୂର ଭଳି ।
ପାଞ୍ଚିଲି ଜଡିଲେ କାହିଁ କୃପା ମତେ
ନଭସ୍ଥ ପୁରୁଷ କରି ॥

୨—ଓଜ ।

କାବ୍ୟରେ ଯେ ଧର୍ମ ଥିଲେ ଚିତ୍ତ ଉଦ୍ଦୀପ୍ତ ହୁଏ ତାହାକୁ ଓଜୋ ଗୁଣ କହନ୍ତି; ଏହା ବୀର, ବିଭତ୍ସ ଓ ରୌଦ୍ର ରସରେ ପ୍ରଯୋଜ୍ୟ, ଏବଂ ବର୍ଗର ପ୍ରଥମାକ୍ଷରସହିତ ଦ୍ୱିତୀୟାକ୍ଷର, ତୃତୀୟାକ୍ଷର ସହିତ ଚତୁର୍ଥାକ୍ଷର ଯୋଗ ହୋଇ ରଚନା ଇତ୍ୟାଦିର ବର୍ଣ୍ଣାବଳୀରେ ଅଧଉର୍ଦ୍ଧ୍ୱ ରେଫ ଦ୍ୱାରା ପ୍ରକାଶ ପାଏ । ଏବଂ ଟ, ଠ, ଡ, ଢ, ଶ, ଷ ଓ ସମାସ ବହୁଳ ବାକ୍ୟାବଳି ଓଜୋଗୁଣର ଦ୍ୟୋତକ ଅଟେ । ଯଥା ।

ଯୋଦ୍ଧା , ଋଦ୍ଧା , ପ୍ରଚଣ୍ଡ , ଊର୍ଜ୍ଜସ୍ୱଳ

୩—ପ୍ରସାଦ ଗୁଣ ।

କାବ୍ୟରେ ଯେ ଧର୍ମ ଥିଲେ ପଦଗତ ଅର୍ଥ ସହସା ବୋଧ ହୋଇ ଚିତ୍ତକୁ ଝିମାନ୍ୱୟୁ ଆନନ୍ଦିତ କରଏ, ତାହାକୁ ପ୍ରସାଦଗୁଣ କହନ୍ତି । ଯଥା ॥

ଜଗତୀ ଉପରେ ଜଗତମୋହନୀ
ବସି ହେଉଥିଲି ବେଶ ।
ଫିଟି ଲୋଟୁଥିଲା ସୁପଦେଁ ଚରମେ
ଛଇଳ କୁଞ୍ଚିତ କେଶ ॥

୭ ମ ପରିଚ୍ଛେଦ ।

କାବ୍ୟର ଶୋଭା କାରକ ଯେ ଧର୍ମ ତାହାକୁ ଅଲଙ୍କାର ବୋଲଯାଏ । ଏହା ଦୁଇପ୍ରକାର ॥ ଯଥା । ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ॥

ଶବ୍ଦାଳଙ୍କାର ।

ଶବ୍ଦର ଶୋଭାକାରକ ଯେ ଧର୍ମ ତାହାକୁ ଶବ୍ଦାଳଙ୍କାର କୁହାଯାଏ । ଶବ୍ଦାଳଙ୍କାର ସ୍ଥୂଳତଃ ତିନି ପ୍ରକାର । ଯଥା ।

୧ ଅନୁପ୍ରାସ
୨ ଯମକ
୩ ଶ୍ଳେଷ ।

୧—ଅନୁପ୍ରାସ—

ସ୍ୱରର ସାମ୍ୟ ନଥିଲେ ସୁଦ୍ଧା ବର୍ଣ୍ଣର ସାମ୍ୟକୁ ଅନୁପ୍ରାସ ବୋଲଯାଏ । ଯଥା ।

ଦେଖିଲି ବାଲାକୁ ସୁହେମଶୀଳାକୁ ବଳା କଙ୍କଣା କୁନ୍ତଳାକୁ ।
ଲମ୍ବାଇ ଗଳାକୁ ସୁମୋତି ମାଳାକୁ ଗୁନ୍ଥିଁ ଯେ ଥିଲି ଚପଳାକୁ ॥
ବାଲା ରେ । କର ଭର ଦେଇ ଶିଳାକୁ ॥

ନାସାର ଉପରେ ବଜାଉ ଥିଲା ବାଜେଣି ନୂପୁର ବାଳାକୁ ।

୬—ଯମକ । —

ଭିନ୍ନାର୍ଥ ବୋଧକ ଏକପ୍ରକାର ଶବ୍ଦର ପୁନରାବୃତ୍ତି ହେଲେ ଯମକ ହୁଏ । ଯଥା ।

ବହଇ ଝଙ୍କାର ଝର ଝର ଅବଇତ ।
ହରେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ॥
କହୁ ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାଞ୍ଛ ।
ବହେ ମନ୍ଦ ମନ୍ଦ ମନ୍ଦଗତି କରେ ରଚ ଯେ ॥
ବିନ୍ଧେ ଘନ ଘନ ଘନ କୁଶକଣ ଯଥା ।
ବୃଷ୍ଟି ମଧୁର ମଧୁର ମଧୁର ଯେ କଥା ଯେ ॥
ବିଭ୍ରାନ୍ତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି ।
ବନୀ ବନ ବନିତା କ ସ୍ୱପ୍ନହାସେ ଝୁଲ ଯେ ॥

ଏହା ମାଳଯମକ ମଧ୍ୟଯମକ ଏବଂ ପ୍ରାନ୍ତଯମକରୂପେ ପ୍ରକାଶ ପାଏ । ଯମକ ମାଳାବଦ୍ଧ ହେଲେ ମାଳ ଯମକ, ବାକ୍ୟର ଅଦ୍ୟରେ ରହିଲେ ଅଦ୍ୟ ଯମକ, ମଧ୍ୟରେ ରହିଲେ ମଧ୍ୟ ଯମକ, ଏବଂ ପ୍ରାନ୍ତରେ ରହିଲେ ପ୍ରାନ୍ତ ଯମକ ହୁଏ ।

୩ — ଶ୍ଳେଷ ।

ଯେଉଁଠାରେ ଏକମାତ୍ର ଶବ୍ଦ ଅନେକାର୍ଥକୁ ପ୍ରକାଶ କରେ, ତାହାକୁ ଶ୍ଳେଷ ବୋଲଯାଏ । ଯଥା ॥

କାମୁ ନାକ ଶିରି ଦାନ ଯୋଗ୍ୟ ଯୋଷାକୁ ।
ହରର ଦାନ ନବର ଅଲଙ୍କାରକୁ ॥

ଏଠାରେ " ନାକଶିରି ଦାନ " ପଦ ସ୍ୱର୍ଗ ସମ୍ପତ୍ତି ଦାନ ଓ " ନାସିକା ଶୋଭା ଛେଦନ " ରୂପ ଉଭୟ ଅର୍ଥ ପ୍ରକାଶ କରୁଥିବାରୁ ଶ୍ଳେଷାଲଙ୍କାର ହେଲା ।

## ଅର୍ଥାଲଙ୍କାର ।

ଅର୍ଥର ଶୋଭାକାରକ ଯେ ଧର୍ମ, ତାହାକୁ ଅର୍ଥାଲଙ୍କାର ବୋଲଯାଏ । ଏହା ପଞ୍ଚତ୍ରିଶ ପ୍ରକାର , ଯଥା

୧ ଉପମା
୨ ରୂପକ
୩ ପରିଣାମ
୪ ସ୍ମରଣ
୫ ସନ୍ଦେହ
୬ ଭ୍ରାନ୍ତିମାନ୍
୭ ଅପହ୍ନୁତି
୮ ଉଲ୍ଲେଖ
୯ ଉତ୍ପ୍ରେକ୍ଷା
୧୦ ଅତିଶୟୋକ୍ତି
୧୧ ଅର୍ଥାନ୍ତରନ୍ୟାସ
୧୨ ଦୃଷ୍ଟାନ୍ତ
୧୩ ପ୍ରତିବସ୍ତୂପମା
୧୪ ନିଦର୍ଶନା
୧୫ ବିଭାବନା
୧୬ ବିଶେଷୋକ୍ତି
୧୭ ବ୍ୟତିରେକ
୧୮ ସମାସୋକ୍ତି
୧୯ ସହୋକ୍ତି
୨୦ ବିନୋକ୍ତି
୨୧ ପର୍ଯ୍ୟାୟୋକ୍ତି
୨୨ ବ୍ୟାଜୋକ୍ତି
୨୩ ବ୍ୟାଜସ୍ତୁତି
୨୪ କାବ୍ୟଲିଙ୍ଗ
୨୫ ପରିକର
୨୬ ସ୍ୱଭାବୋକ୍ତି
୨୭ ପରିବୃତ୍ତି
୨୮ ବିଷମାଲଙ୍କାର ,
୨୯ ଅସଙ୍ଗତି
୩୦ ବିରୋଧାଭାସ
୩୧ ବ୍ୟାଘାତ
୩୨ ଅନୁକୂଳ
୩୩ ଅର୍ଥାପତ୍ତି
୩୪ ସଂକର
୩୫ ସଂସୃଷ୍ଟି

୧ — ଉପମା ।

ବର୍ଣ୍ଣନୀୟ ବିଷୟରେ ଅନ୍ୟ ବିଷୟର ଧର୍ମ କଥିତ ହେଲେ ଉପମାଲଙ୍କାର ହୁଏ । ବର୍ଣ୍ଣନୀୟ ବିଷୟକୁ ଉପମେୟ ଓ ଯାହାର ଧର୍ମ ବର୍ଣ୍ଣନୀୟ ବିଷୟରେ କଥିତ ହୁଏ, ତାହାକୁ ଉପମାନ କହନ୍ତି । ଉପମେୟ ଓ ଉପମାନ ଉଭୟ ନିଷ୍ଠ ସମାନ ଗୁଣକୁ ଧର୍ମ ବା ସାଦୃଶ୍ୟ ବୋଲଯାଏ । ଗୁଣ, କିମ୍ବା ସ୍ୱରୂପରେ ଏହି ଧର୍ମ ପ୍ରକାଶ ପାଏ । ଉପମାଦୁଇ ପ୍ରକାର ହୁଏ । ଯଥା ।

ପୂର୍ଣ୍ଣୋପମା

ଲୁପ୍ତୋପମା ।

ଉପମାରେ ପ୍ରାୟ, ଯେହ୍ନେ, ଯଥା, ଯେପରି, ତୁଲ୍ୟ, ସଦୃଶ-ନ୍ୟାୟ, ସମ, ପରାୟେ, ପରି, ବତ, ଇତ୍ୟାଦି ସାଦୃଶ୍ୟବୋଧକ ଶବ୍ଦ ପ୍ରଯୁକ୍ତହୁଏ, ଏହେତୁରୁ ଏମାନଙ୍କୁ ଉପମା ବାଚକ କହନ୍ତି ।

ପୂର୍ଣ୍ଣୋପମା ।

ଉପମେୟ, ଉପମାନ, ସାମାନ୍ୟଧର୍ମ ଓ ଉପମାବାଚକ-ଶବ୍ଦ ଏହି ଚତୁଷ୍ଟୟ ଯେଉଁ ବାକ୍ୟରେ ପ୍ରକାଶ ପାଏ, ସେଠାରେ ପୂର୍ଣ୍ଣୋପମାଲଙ୍କାର ହୁଏ । ଯଥା ।

ଦେଖାଇ ଘମ୍ବରେ ମଧ୍ୟେ ଗୃହବାଳା
ବେଳ ସଖୀ ବେନି ପାଶେ,
ଛବି ମୂର୍ତ୍ତି ଏକ ରେଖାରେ ଦିଶଇ
ଇନ୍ଦୁଲା ଯଥା ଅକାଶେ,
ଯ : ଭେ : ପୃ ୧୧

ଏଠାରେ ଗୃହ ବାଳା ଓ ସଖୀ——ଉପମେୟ

ଇନ୍ଦୁଲା——ଉପମାନ

ଏକରେଖାରେ ଛବିମୂର୍ତ୍ତି ଦିଶିବା-ସାମାନ୍ୟ ଧର୍ମ "ଯଥା" ଉପମା ବାଚକ । ଏମାନେ ଏକବାକ୍ୟରେ ଥିବାରୁ ପୂର୍ଣ୍ଣୋପମାଲଙ୍କାର ହୋଇଅଛି ।

ଲୁପ୍ତୋପମା

ଉପମେୟ, ଉପମାନ, ସାମାନ୍ୟ ଧର୍ମ ଓ ବାଚକ ଏମାନଙ୍କର ମଧ୍ୟରୁ ଯଦି କୌଣସିଟାର ଅଭାବ ବାକ୍ୟରେ ଲକ୍ଷିତ ହୁଏ ସେଠାରେ ଲୁପ୍ତୋପମା ହୁଏ । ଯଥା ।

ବମ୍ବାଧରୀଙ୍କର ଚମ୍ପକ ଅଙ୍ଗୁଳି
କର୍ଣ୍ଣେ ମଥୁ ଧୁଁଆଳ,
ଉପୁଜିବା ଆଶେ ବେଦନ୍ନରେ ଗଢ଼ା
ଦେଉଅଛୁ ଲୌହ ଡାଳ ।

ପାବଣ୍ଡୀ ପୃ ୨

ବମ୍ବାଧରୀ ଓ ଚମ୍ପକ ଅଙ୍ଗୁଳି ଏହି ପଦ ଦ୍ୱୟରେ "ପରି" ରୂପ ଉପମାବାଚକ ଶବ୍ଦ ଓ "ସୁନ୍ଦର" ରୂପ ସାଧର୍ମ୍ୟ ଲୋପ ହୋଇଅଛି ।

୨—ରୂପକ ।

ଉପମେୟ ଓ ଉପମାନର ଅଭେଦ କଥିତ ହେଲେ ରୂପକାଲଙ୍କାର ହୁଏ । ଯଥା ।

ପ୍ରଚଣ୍ଡ ମାର୍ତ୍ତଣ୍ଡ—ମୟୂଖ, ସନ୍ତାପିତ
ଜ୍ୱର ଉପତାପେ କାନ୍ତି
ଶିଳା ଧାତ ଅସ୍ଥି—ଜାଲରେ ବଳିତ
ହୋଇଛି ଅତି ସଂକୀର୍ଣ୍ଣ
ତରୁ ବୃନ୍ଦ ଗୃହ ଧମନୀ ଅବଳୀ
ଦିଶୁଛି ଶରୀର ଭେଦୀ
ଜୀବନ ସୋପାନ ବହି ଅଛିବାରୁ
ଜୀବନ ସଂଶୟ ଛେଦୀ ।

ଚନ୍ଦ୍ରୋପୂଜା ପୃ ୨

କୁଟିଳ କୁନ୍ତଳ—ଅନ୍ତମୂଳ ବେଷେ
ଲବଣୀ-ମାଳ ରଚଇ

ଫେନ ପୁଞ୍ଜ ହାସ-ରସେ ତରଙ୍ଗିଣୀ
ଭ୍ରମସ୍ତି ରଙ୍ଗେ କ୍ରୀଡଇ ।

ଚନ୍ଦ୍ରୋତ୍ପଳା ପୃ ୨

ପୌର୍ଣ୍ଣମାସୀ–ନଭେ ଶୋଭୁଥିଲେ ଦେବ
କ୍ଷୀରାବ୍ଧି-ଶୁକ୍ତି ମୌକ୍ତିକ
ଛାର୍ ଗୋଷ୍ଠେ ଷଣ୍ଢ ଅଖଣ୍ଡ ଚନ୍ଦ୍ରମା
ସୁର ଧୂନୀ-ପୁଣ୍ଡରୀକ ।

ଯଃ କେଃ ପୃ ୬୨

ଏଠାରେ ଉପମେୟ ଶିଳା ତରୁ ବୃନ୍ଦ ଲହରୀମାଳ ଫେନପୁଞ୍ଜ ଓ ଚନ୍ଦ୍ରମା ଇତ୍ୟାଦିଙ୍କସହ ଅସ୍ଥି ଧମନୀଆବଳୀ କୁନ୍ତଳକୁନ୍ତଳ କ୍ଷିରାବ୍ଧି ଶୁକ୍ତି-ମୌକ୍ତିକ ସୁରଧୂନୀ ପୁଣ୍ଡରୀକ ରୂପ ଉପମାନ ସମୂହର ଅଭେଦ କଥିତ ହେବାରୁ ରୂପକାଲଂକାର ହେଲା ।

୩—ପରିଣାମ

ଉପମାନ ଉପମେୟ ସ୍ୱରୂପରେ ପ୍ରକୃତ ବିଷୟର ଉପଯୋଗୀ ହେଲେ ପରିଣାମାଲଂକାର ହୁଏ । ଯଥା ।।

ସ୍ୱଭାବେ ସୁବର୍ଣ୍ଣ, ଯୌବନ
ହେଲା ଯୋଗ୍ୟ ରସାଣ
ରୂପାସ୍ତ୍ରର ହେଲା ରୂପସୀ
ଷଷ୍ଠ ଅମୋଘ ବାଣ ।

ଚନ୍ଦ୍ରଭାଗା ପୃ ୧୨

ଏଠାରେ ୧ ମ ପଦରେ ଯୋଗ୍ୟ ରସାଣ, ଓ ୨ ୟ ପଦରେ କନ୍ଦର୍ପର ବାଣ ସ୍ୱରୂପ ଉପମାନ, ଯୌବନ ଏବଂ ଚନ୍ଦ୍ରଭାଗା ସ୍ୱରୂପ ଉପମେୟ ଭାବରେ ସୁକାନ୍ତିର ଲାବାଣ୍ୟସମ୍ପାଦନ ଓ ଦର୍ଶକ ଯୁବକ ମାନଙ୍କର ହୃଦୟାକର୍ଷଣସ୍ୱରୂପ ପ୍ରକୃତକାର୍ଯ୍ୟର ଉପଯୋଗୀ ହେବାରୁ ପରିଣାମାଲଂକାର ହେଲା ।

ଏହି ପରିଣାମାଲଂକାର ରୂପକଅଲଂକାର ମଧ୍ୟରେ ଅତି ସାମାନ୍ୟ

ପାର୍ଥକ୍ୟ ଦେଖାଯାଏ , ଭ୍ରମ ନିବାରଣ ନିମନ୍ତେ ନିମ୍ନେ ବୁଝାଇ ଦିଆଗଲା ॥ ଯଥା ॥

ରୂପକ , ଉପମାନ ଓ ଉପମେୟର ଶୋଭାକୁ ମାତ୍ର ବ୍ୟକ୍ତ କରେ ॥ ଯେପରିକି " କରପଦ୍ମ " ଏହିପଦରେ ଉପମାନ ପଦ୍ମ ଉପମେୟ-କରର ସୌକୁମାର୍ଯ୍ୟ ରକ୍ତିମାସ୍ୱରୂପ ଶୋଭାକୁ ପ୍ରକାଶ କରୁଛି ପରିଣାମାଲଂକାରସ୍ଥଳରେ ଉପମାନ ପ୍ରକୃତାର୍ଥର ଉପଯୋଗୀ ହୁଏ । ଏହିମାତ୍ର ରୂପକ ପରିଣାମ ମଧ୍ୟରେ ପାର୍ଥକ୍ୟ ଦେଖାଯାଏ ।

୪—ସ୍ମରଣ

ସାଦୃଶ୍ୟାନୁଭବ ହେତୁ ସଦୃଶବସ୍ତ୍ୱନ୍ତରର ସ୍ମୃତି ହେଲେ ସ୍ମରଣାଲଂକାର ହୁଏ । ଯଥା ।

ଦେଖି ବଙ୍ଗୀର    ନୀଳାମ୍ବର-ଶୋଭି
ସ୍ୱଚ୍ଛରୁ ଅଙ୍ଗ-ଲତିକା
ସ୍ମରିଲେ ଗୁଣୀଏ    ପରିଚିତ ନୀଳ—
ସିନ୍ଧୁ ହିଲ୍ଲୋଳେ ଚନ୍ଦ୍ରିକା ।

ପାର୍ବତୀ ପୃ ୮୩

ଏଠାରେ ନୀଳାମ୍ବର-ଶୋଭି ସ୍ୱଚ୍ଛରୁ ଅଙ୍ଗ-ଲତିକାରେ ନୀଳ-ସିନ୍ଧୁ ହିଲ୍ଲୋଳଗତ ଚନ୍ଦ୍ରିକାର ସାଦୃଶ୍ୟ ଥିବାରୁ ସେହି ସାଦୃଶ୍ୟ ଦେଖିବା ଦ୍ୱାରା ଚନ୍ଦ୍ରିକାର ସ୍ମରଣ ହେଲା । ଅର୍ଥାତ୍ ବଙ୍ଗୀର ଅଙ୍ଗ ନୀଳଶାଢ଼ୀଦ୍ୱାରା ଯେ ଶୋଭା ବିସ୍ତାର କରୁଅଛି , ଶାଢ଼ୀ ସମାନ ଗୁଣ ବିଶିଷ୍ଟ ସିନ୍ଧୁ ହିଲ୍ଲୋଳରେ ଚନ୍ଦ୍ରିକା ସେହି ଶୋଭା ବିସ୍ତାର କରୁଥିଲା ।

୫—ସନ୍ଦେହ

ଉପମେୟ ଓ ଉପମାନର ପାର୍ଥକ୍ୟ ନିର୍ବଚନବିଷୟରେ ଚମତ୍କାର ଜନକ ସଂଶୟ ଜନ୍ମିଲେ ସନ୍ଦେହାଲଂକାର ହୁଏ । ଯଥା

କାଳୁଛି ନୁହଇ ମାର ନାହିଁ ଫୁଲ ଧନୁଶର
ସୁଧାକର ନୁହେ ତହିଁ କଳଙ୍କ ଅଛି ।

ଅଜ୍ଞ ଦେବତା ମାନଙ୍କୁ କର୍ପା । ଅର୍ଣ୍ଣବା ମଜ୍ଜକୁ
ମୋହର ସୁକୃତ ଏପୁରୁଷ ହୋଇନ୍ତୁ
ମୋର ପୁଣି ସୁକୃତ କେତେ
ଏମନ୍ତ ଶୋଭା ତାତ ହେବାକୁ ଜଗତେ ॥

ଲ: ବ: ପୃ ୪୬

ଏଠାରେ ଲୋକୋତ୍ତରଶାଳୀ ସୁନ୍ଦର · ଚନ୍ଦ୍ରଭାନୁସ୍ୱରୂପଉପମେୟର ସମସୁନ୍ଦର ଫୁଲଧନୁ ସୁଧାକର ଏହି ଉପମାନମାନଙ୍କରୁ ପାର୍ଥକ୍ୟ ଦେଖାଇବା ସକାଶେ ଲାବଣ୍ୟବତୀ ବର୍ଣ୍ଣନ କରିଥିବାରୁ ସନ୍ଦେହାଳଂକାର ହେଲା ।

୬—ଭ୍ରାନ୍ତିମାନ୍

ସାଧର୍ମ୍ୟ ହେତୁରୁ ଉପମେୟରେ ଉପମାନ ଭ୍ରମବୋଧ ତଦ୍ଗତ କାର୍ଯ୍ୟକର୍ତ୍ତୃତ ହେଲେ, ଭ୍ରାନ୍ତିମାନ୍ ଅଳଂକାର ହୁଏ । ଯଥା ।

କେଶକୁ ଶୈବାଳ ମନେକରି ମୀନା-
ବଳୀ ଧାଆନ୍ତି ସଦ୍ଧରେ
ବରଡ଼ା ସହିତ ମରାଳ ଆସଇ
ବାହୁ ମୃଣାଳ ଆନରେ ।

ଛନ୍ଦୋମାଳା ପୃ ୬୦

ଏଠାରେ କେଶ ଓ ବାହୁ ରୂପଉପମେୟରେ ଶୈବାଳ ଓ ମୃଣାଳ ରୂପ ଉପମାନର କୃଷ୍ଣତା ଓ କୋମଳତା ସାଧର୍ମ୍ୟରୁ ମୀନାବଳୀ ଓ ମରାଳ ଭ୍ରମକରି ଅଗ୍ରଗାମୀ ହୋଇଅଛନ୍ତି, ଏଣୁ ଭ୍ରାନ୍ତିମାନ୍ ଅଳଂକାର ହେଲା ।

୭—ଅପହ୍ନୁତି

ପ୍ରକୃତକୁ ନିଷେଧ କରି ଅପ୍ରକୃତ କୁ ନିର୍ଦ୍ଧାରଣ କଲେ ଅପହ୍ନୁତି ଅଳଂକାର ହୁଏ । ଯଥା ।

ବସ୍ତୁ ନୁହଇ ସେ ଅଟଇ ଧୂମ
ଅନ୍ୟ ନାମ ତାର ଆକାଶ କୁସୁମ ।

ଚିଲ୍ଲିକା ପୃ ୩୬

ଏଠାରେ ଯୁଗ୍ମ ସ୍ୱରୂପ ପ୍ରକୃତ ବସ୍ତୁକୁ ନିଷେଧ କରି ଧୂମ ଓ ଆକାଶ କୁସୁମ ସ୍ୱରୂପ ଅପ୍ରକୃତ ପଦାର୍ଥକୁ ବର୍ଣ୍ଣନା କରିବାରୁ ଅପହ୍ନୁତି ଅଳଂକାର ହେଲା ।

୮—ଉଲ୍ଲେଖ

ଏକ ବିଷୟ ଅନେକ ଲୋକ ଦ୍ୱାରା ଅନେକ ପ୍ରକାର ହୋଇ ଉଲ୍ଲିଖିତ ହେଲେ ଉଲ୍ଲେଖାଲଂକାର ହୁଏ । ଯଥା ।

ତାକୁ ଯେ ନନ୍ଦ ନାଗର କାହ୍ନ
ଦେଖି ପାରୋର ଦ ତାହାର ମନ
ଶିଶୁଙ୍କ ବସନ୍ତ ଶିଶୁ ପରାୟେ
ନାରୀଙ୍କ ଦୃଷ୍ଟିକି ମଦନ ପରାୟେ
ବୃଦ୍ଧଙ୍କୁ ବାଳକ ସ୍ୱଭାବ ମତି
ଜ୍ଞାନଙ୍କି ନିର୍ଗୁଣ ରୂପ ଶ୍ରୀ ପତି
ଭକ୍ତକୁ ନନ୍ଦ ନନ୍ଦନ ପରି
ନାନା ରୂପ ଧରେ ମନକୁ ଧରି ।

ମଥୁରାମଙ୍ଗଳ : ପୃ ୭୫

ଏଠାରେ ଏକ ଶ୍ରୀକୃଷ୍ଣ ଶିଶୁଙ୍କ ଶିଶୁ ପରାୟେ, ନାରୀଙ୍କ ଦୃଷ୍ଟିକି କନ୍ଦର୍ପପରି, ବୃଦ୍ଧମାନଙ୍କୁ ବାଳକପରି, ଜ୍ଞାନଙ୍କୁ ନିର୍ଗୁଣବ୍ରହ୍ମପରି, ଭକ୍ତଙ୍କୁ ନନ୍ଦନନ୍ଦନପରି ଦିଶୁଥିବାରୁ ବର୍ଣ୍ଣିତ ହୋଇଥିବାରୁ ଉଲ୍ଲେଖାଲଂକାର ହେଲା ।

୯—ଉତ୍ପ୍ରେକ୍ଷା

ବର୍ଣ୍ଣନୀୟ ବିଷୟ ଅପ୍ରକୃତବିଷୟରୂପରେ କେବଳ ତର୍କଣା କରାଗଲେ ଉତ୍ପ୍ରେକ୍ଷାଲଂକାରହୁଏ । ଯଥା ।

ସୁନୀଲ ଅମ୍ବର—ସନ୍ଦୋହର ଗାତ୍ର—
ସଙ୍କୁଳ ଉଦୟ ତଃ
କସୃନ ପାଇଁ କି ? ତାନ ଢାଡି ଅଛି
ଛନ୍ତୁ କାୟ ନୀଳ ପଟ ।

ଛନ୍ଦୋମୃଳା ପୃ ୩

ଏଠାରେ ଚନ୍ଦ୍ରୋପମା ସ୍ୱରୂପ ବର୍ଣ୍ଣନୀୟବିଷୟ ଚନ୍ଦ୍ରବାୟୁ ନୀଳପଟ୍ଟସ୍ୱରୂପ ଅପ୍ରକୃତ ବିଷୟରେ ତର୍କିତହୋଇଥିବାରୁ ଉତ୍ପ୍ରେକ୍ଷାଲଂକାର ହେଲା ।

ଏହି ଉତ୍ପ୍ରେକ୍ଷାଲଂକାରରେ କେତେକ ବାଚକପଦ ଅବଶ୍ୟକ ହୁଏ, ତାହାନିମ୍ନେ ପ୍ରକଟ ହେଲା । ଯଥା ।

କି, ଅବା, ବା, କିମ୍ବା, ଯଦ୍, ସନ୍ଦେହ ? ସିନା ଇତ୍ୟାଦି ।

୧୦—ଅତିଶୟୋକ୍ତି

ବର୍ଣ୍ଣନୀୟ ବିଷୟର ବର୍ଣ୍ଣନା ଲୋକୋତ୍ତର ହେଲେ ଅତିଶୟୋକ୍ତି ହୁଏ । ଯଥା ।

ସ୍ୱୟମ୍ଭୂ କାଣଠାବରୁ   କର ରଣ କଢ଼ି ଭାଙ୍ଗୁ—
ମଣିର କାମିଣି ସାର ଶୁଦ୍ଧ ଚକୁର ।
ସିଦ୍ଧାନ୍ତ ହେଲେ ଯେ ପାଣି   ଶେଷ କଲା ପଥ ଶ୍ରେଣୀ
ଭୂତ ଭଣ୍ଡ କହୁ କନ୍ଦୁ ହୋଇ ସୁନ୍ଦର ।
ସୁଦୃଷ୍ଟି ଏ ରତ୍ନେ ହୁଥର ।
ସୁମତ ଚୂର୍ଣ୍ଣକୁନ୍ତଳ ବୋଲି ନ କହ ।

ସୁଭଦ୍ରା ପରିଣୟ : ପୃ ୧୧ ପ ୯ ଦ

ଏଠାରେ ସୁଭଦ୍ରାଙ୍କର କେଶ କଲାପ ଏବଂ ଚୂର୍ଣ୍ଣ କୁନ୍ତଳ ସ୍ୱରୂପ ବର୍ଣ୍ଣନୀୟ ବିଷୟ "ବ୍ରହ୍ମାଙ୍କର ଭୁଜ ଚତୁଷ୍ଟୟ ଦ୍ୱାରା ରଚନୀୟ ହେବାର ସମ୍ଭବ ନୁହେଁ" ଏରୂପ ଲୋକୋତ୍ତର ବର୍ଣ୍ଣନା ହେବାରୁ ଅତିଶୟୋକ୍ତି ଅଳଙ୍କାର ହେଲା ।

୧୧—ଅର୍ଥାନ୍ତର ନ୍ୟାସ

ପ୍ରକୃତ ବିଷୟ ଅପରବିଷୟଦ୍ୱାରା ସମର୍ଥିତ ହେଲେ ଅର୍ଥାନ୍ତରନ୍ୟାସ ଅଲଂକାର ହୁଏ । ଯଥା ।

ସେକାଳେ ଦାବାନଳେ ଗିରି କାନନେ
ଜଳୁଥିବ ହେ ଯେବେ ବାରି ବର୍ଷଣେ
ଲଭିବ ଅନଳ ସଂଶୟ ତହିଁ
ମହତ ଲୋକର ଏ ସୁରୀତି ଅଛି

ଏଠାରେ ଜଳ ବର୍ଷଣ ଦ୍ୱାରା ଶିଖିକାନନ ବିଧ୍ୱଂସୀ ଦାବାନଳ ପ୍ରଶମନ ମେଘର ଅବଶ୍ୟ କର୍ତ୍ତବ୍ୟ, ଏରୂପ ପ୍ରକୃତ ବସ୍ତୁ ଚତୁର୍ଥ ପାଦଦ୍ୱାରା ସମର୍ଥିତ ( ଦୃଢୀକୃତ ) ହେବାରୁ ଅର୍ଥାନ୍ତର ନ୍ୟାସ ଅଳଙ୍କାର ହେଲା ।

୧୨ — ଦୃଷ୍ଟାନ୍ତ

ବର୍ଣ୍ଣନୀୟ ବସ୍ତୁର ଧର୍ମ ଅପରବସ୍ତୁର ଧର୍ମ ସହିତ ଅନୁରୂପ ହେଲେ ଦୃଷ୍ଟାନ୍ତଅଳଙ୍କାର ହୁଏ । ଯଥା ।

ଦେହ ସମ୍ଭାଷଣ କାହିଁ ଲୋ କାରଣ ମାନେକ ? ପ୍ରେମିକମନ
ସୂକ୍ଷ୍ମକୁ ସ୍ଥୂଳରେ ପଥ ଓଗାଳିଲେ ସ୍ଥୂଳକୁ ଛାଡ଼ି ଯାଉନ ।

କେ: ଗୋ: ପୃ ୨

ପ୍ରେମିକ ମନ ଦେହସମ୍ଭାଷଣ କାରଣମାନେ ନାହିଁ; ସୂକ୍ଷ୍ମକୁ ସ୍ଥୂଳ ପଥଓଗାଳି ନପାରେ, ଏଠାରେ ବର୍ଣ୍ଣନୀୟ ଯୁବକ ଯୁବତୀ ଦୁହିଁଙ୍କର ମନ, ନବୀନ ପ୍ରେମାନୁସ୍ୟୂତ ହେବା, ସ୍ଥୂଳଦ୍ୱାରା ସୂକ୍ଷ୍ମ ବାରିତ ନୋହିବା ଏହି ବାକ୍ୟ ଦ୍ୱୟର ଅନୁରୂପ ସାଦୃଶ୍ୟ ଥିବାରୁ ଦୃଷ୍ଟାନ୍ତାଲଙ୍କାର ହେଲା ।

୧୩ — ପ୍ରତିବସ୍ତୂପମା

ସଦୃଶ୍ୟ ବାକ୍ୟମାନଙ୍କର ସାମାନ୍ୟଧର୍ମ ଭିନ୍ନ ୨ ଶବ୍ଦଦ୍ୱାରା ପ୍ରକାଶ ପାଇଲେ ପ୍ରତିବସ୍ତୂପମାଳଙ୍କାର ହୁଏ, ଯଥା ।

ପୂଣ୍ୟଭୂମି ନୋହୁ ଥିଲେହେଁ ଏବାଲା
ଜନମି ଥାନ୍ତା ଉତ୍କଳେ
ତ୍ରିଦଶ-ସୁନ୍ଦରୀ ସୌଦାମିନୀ କେବେ
ସ୍ଫୁରେକି ବସୁଧାତଳେ

ଯ : କେ : ପୃ ୨୦

ପୁଣ୍ୟଭୂମି ଭିନ୍ନସ୍ଥଳେ ବାଳାଜନ୍ମ ନହେବା ଓ ତ୍ରିଦଶ ସୁନ୍ଦରୀ ବସୁଧାତଳେ ସ୍ଫୁରଣ ନହେବା ଉଭୟ ସଦୃଶ ବାକ୍ୟରେ ଜନ୍ମହେବା ରୂପ ସାଧାରଣଧର୍ମ ଜନମ ଓ ସ୍ଫୁରଣରୂପ ଭିନ୍ନ ୨

ଶବ୍ଦଦ୍ୱାରା ପ୍ରକାଶହୋଇଥିବାରୁ ପ୍ରତିବସ୍ତୂପମା ଅଳଙ୍କାର ହେଲା ॥

ଅଥବା ଯେପରି ଶୈବଳ ସୁନ୍ଦରୀ ସୌଦାମିନୀ ବସୁଧା ତଳେ ସ୍ଫୁରେ ନାହିଁ, ସେପରି ଏ ବାଳା ପୂର୍ଣ୍ଣେତର ଭୂମିରେ ଜନ୍ମ ହେବା ସମ୍ଭବନହେ, ଏଠି ସଦୃଶ ବାକ୍ୟ ଦ୍ୱୟର ଉକ୍ତି ସ୍ୱରୂପ ସାମାନ୍ୟ— —ଧର୍ମ ଜନ୍ମ ସ୍ଫୁରଣ ରୂପ ଭିନ୍ନ ଭିନ୍ନ ଶବ୍ଦ ଦ୍ୱାରା ପ୍ରକାଶ ହୋଇ ଥିବାରୁ ପ୍ରତି ବସ୍ତୂପମାଳଙ୍କାର ହେଲା ।

୧୪—ନିଦର୍ଶନା ।

ବିଷୟର ଉପମାନର ସହିତ ସମ୍ବନ୍ଧ ସଙ୍ଗତ ହେବା ନିମନ୍ତେ ସାଦୃଶ୍ୟର ଅଧ୍ୟାହାର ହେଉଥିଲେ ନିଦର୍ଶନାଲଙ୍କାର ହୁଏ । ଯଥା

ଦଧି ସୃଷ୍ଟି କିମ—ପ୍ରତୀପେ ବାସନା
ଯୋଷଇ ହୃଦେ ଯେ ପ୍ରାଣୀ
ତୃଣ ହୋଇ ସିନା ଭାସିବାକୁ ଲୋଡ଼େ
ପ୍ରପାତ ସ୍ରୋତେ ଅଜାଣି ।

ଯେଉଁ ଲୋକ ଦଧି ତଥ୍ୟାନକ ପ୍ରତିକୂଳବାସନା କରୁଅଛୁ, ସେ ଲୋକ ତୃଣ ହୋଇ ପ୍ରପାତ ସ୍ରୋତରେ ଉଠିବାକୁ ଚେଷ୍ଟା କରୁଅଛୁ, ଏଠି ବାକ୍ୟଦ୍ୱୟ ସମ୍ବନ୍ଧ ସଙ୍ଗତହେବା ନିମନ୍ତେ ଅନୁକରଣୀୟତା ରୂପ ସାଦୃଶ୍ୟ ଅଧ୍ୟାହୃତ ହେଉଥିବାରୁ ନିଦର୍ଶନାଲଙ୍କାର ହେଲା ।

୧୫—ବିଭାବନା ।

ବିନା ହେତୁରେ କାର୍ଯ୍ୟର ଉତ୍ପତ୍ତି ହେଲେ ବିଭାବନା ଅଳଙ୍କାର ହୁଏ । ଯଥା ।

ପୁଣେ ପଡ଼େ ପୁଣି ଏମନ୍ତ ବିପାକ
ଏଡ଼େ ବେଗରେ
କେ କହିବ କାହିଁ ଏବଜ୍ର ପଡ଼ିଲା
ବିନା ମେଘରେ ।

ଭୂଷା : ପୃ ୩୩

ଏଠାରେ ଊଷାର ମରଣ ଘଟଣା କାରଣରେ ହେବା ଉଲ୍ଲିଖିତ ହେବାରୁ ବ୍ରିଗିଡ୍ ଯାହାରେ ମଧ୍ୟ ଘଟଣା ମେଘରେ ବଜ୍ରାଘାତ ହୋଇ ଥିବା ଉକ୍ତ ହେବାରୁ ଘଟଣାକାରଣରେ କାର୍ଯ୍ୟୋତ୍ପତ୍ତି ସ୍ୱରୂପ ବଭବ--

--ନାଲଙ୍କାର ହେଲା ।

୧୬—ବିଶେଷୋକ୍ତି ।

ହେତୁ ( କାରଣ ) ଥାଇ ଫଳ ( କାର୍ଯ୍ୟ ) ର ଅଭାବ ହେଲେ ବିଶେଷୋକ୍ତି ଅଲଙ୍କାର ହୁଏ । ଯଥା ।

ସେହି ପ୍ରେମ ବନ୍ଧ ମୁହିଁ ଦେଲି ଜାତ
ତୁଟି ନପାରିଲା ଲଜ୍ଜାର ନଗତ ।

ନ : ହେ : ପୃ ୩୪

ଲଜ୍ଜାର ନଗତ ଛଣ୍ଡାଇବା ପ୍ରତି ପ୍ରେମ କେବଳ କାରଣ ଅଟେ । କିନ୍ତୁ ସେହି ପ୍ରେମ ଥାଇ ନୃପକାଶ୍ମୀରୀଙ୍କର ଲଜ୍ଜାର ନଗତଚ୍ଛେଦନସ୍ୱରୂପ କାର୍ଯ୍ୟର ଅଭାବ ହେଉଥିବାରୁ ବିଶେ-ଷୋକ୍ତି ଅଲଙ୍କାର ହେଲା ।

୧୭—ବ୍ୟତିରେକ ।

ଉପମାନରୁ ଉପମେୟର ଆଧିକ୍ୟ କଥିତ ହେଲେ ବ୍ୟତିରେକ ଅଲଙ୍କାର ହୁଏ । ଯଥା ।

ଦିଶୁଥିଲା ଶିଶୁ ତରଣାକ୍ଷୀ ରତ୍ନ—
ଭୂଷଣେ କିବା ମଞ୍ଜୁଳ
ତୁଳ ତାର ଦିନା ହୁଅନ୍ତା ତତତ—
ଲତାରେ ଫୁଟିଲେ ଫୁଲ ।

ଯ : ହେ : ପୃ ୬୮

ଏଠାରେ ଉପମାନ ତତତଲତାଠାରୁ ଉପମେୟ ଶିଶୁ ତରଣାକ୍ଷୀ (ଲଳିତା)ର ଆଧିକ୍ୟ କଥିତ ହୋଇଅଛି । ଯେହେତୁ ଉପମାନ ତତତ ଲତାରେ ଫୁଲ ଫୁଟିଲେ ଉପମେୟର ତୁଳନା ହୁଅନ୍ତା ବୋଲି ଉଲ୍ଲିଖିତ ହୋଇଅଛି, ଏଣୁ ବ୍ୟତିରେକ ଅଲଙ୍କାରହେଲା ।

୧୮—ସମାସୋକ୍ତି ।

କାର୍ଯ୍ୟ ବା ଗୁଣ ଦ୍ୱାରା ବର୍ଣ୍ଣନୀୟ ବିଷୟରେ ଅପର ଅବାଞ୍ଛିତ ବିଷୟାନ୍ତର ବ୍ୟବହାର ତର୍କଣା କରାଗଲେ ସମାସୋକ୍ତି ଅଳଙ୍କାର ହୁଏ । ଯଥା ।

କମଳା ଉଠିମା ଲିଟ୍ଟ କାନନେ ।
ବସନ୍ତେ କୋକିଳ ଭ୍ରମର ସ୍ୱନେ ।
ନଦୀ ଜଳ କଳ, ଘୂର୍ଣ୍ଣ ଚଞ୍ଚଳ ।
ହୁଅଇ ଶୋଭନ; ରନ୍ତୁ ବଚନେ ।
ନଦୀକୁ ରହସ୍ୟ ଭାଷୁ ବିଜନେ ॥

ଉ : ବ : ପୃ ୧୮

ନଦୀକୁ ବିଜନରେ ଭାଷିବାରୂପ କାର୍ଯ୍ୟ ଦ୍ୱାରା ବର୍ଣ୍ଣନୀୟ ବାୟୁଠାରେ ନାୟକ ବ୍ୟବହାର ଏବଂ ନଦୀଠାରେ ନାୟିକା ବ୍ୟବହାର ତର୍କଣା କରାଯାଇଥିବାରୁ ସମାସୋକ୍ତି ଅଳଂକାର ହୋଇଅଛି ।

୧୯—ସହୋକ୍ତି ।

ଯେଉଁଠାରେ ଏକ ପଦାର୍ଥ ସହଭାବ ସହଯୋଗେ ଅତିଶୟୋକ୍ତି ଅନୁପ୍ରାଣିତ ହୋଇ ଦୁଇଗୋଟି ପଦାର୍ଥକୁ ବୁଝାଇଥାଏ ସେଠାରେ ସହୋକ୍ତି ଅଳଂକାର ହୁଏ । ଯଥା ।

ଶସ୍ତ୍ର ଭୂମି ଦେହ ଚାହିଁ ଶତ୍ରୁ ନାରୀ ଗଳେ ।
ଓଟାର ନେଲେ ଖାପୁନ ଶତ୍ରୁ ପ୍ରାଣ ସହ ।

ମହାଯାତ୍ରା ପୃ ୧୩୭

ଶସ୍ତ୍ର ଖାପୁନ ପ୍ରଥମେ ଓଟାରିଲେ ପଶ୍ଚାତ୍ ପ୍ରାଣଯାଏ, କିନ୍ତୁ ସଙ୍ଗେ ଯିବା ବର୍ଣ୍ଣନ କରି ଅତିଶୟୋକ୍ତି, ଏଠାରେ " ଓଟାରିନେଲେ " ଏହି ଶବ୍ଦ " ସହ " ଶବ୍ଦ ବଳରେ ଶତ୍ରୁ ପ୍ରାଣ ଓ ଖାପୁନ ଦୁହିଙ୍କ ବିଷୟ କହିବାରୁ ସହୋକ୍ତି ଅଳଂକାର ହେଲା ।

୨୦—ବିନୋକ୍ତି ।

ଯତ୍ର ବିନା ଅନ୍ୟର ଉତ୍କର୍ଷ ବା ଅପକର୍ଷ କଥିତ ହେଲେ ବିନୋକ୍ତି ଅଳଂକାର ହୁଏ । ଯଥା ।

କମଳା ଗଳାରୁ—ବରବସନ୍ତାପେ
ବିବର୍ଣ୍ଣ ହେଲା ସେ ଶ୍ୟାମା
ଚନ୍ଦ୍ରମା ସଜନୀ ଗ୍ରହଗଣେ ଯଦି
କାଳିମା ବିନା ନ ଯାମା ।

ଯ : କେ : ପୃ ୪୮

ଏଠାରେ କମଳାର ବଚନରୁ ଶ୍ୟାମା ବିବର୍ଣ୍ଣ ହେବା ଚନ୍ଦ୍ରମା ବିନା ନ ଯାମା କାଳିମାବର୍ଣ୍ଣ ଧାରଣ କରିବା ରୂପ ଅପକର୍ଷ କଥିତ ହେବାରୁ ବିନୋକ୍ତି ଅଳଙ୍କାର ହେଲା ।

୨୧—ପର୍ଯ୍ୟାୟୋକ୍ତି

କବିର ଅଭିମତାର୍ଥ ଭଙ୍ଗୀ ଦ୍ୱାରା ପ୍ରକାଶ ହେଲେ ପର୍ଯ୍ୟାୟୋକ୍ତି ଅଳଙ୍କାର ହୁଏ । ଯଥା ।

ସତ୍ୟ କହାଉଣ କାରଣ ମୋହ ପଡ଼ିବ ଉର୍ଦ୍ଧେଁ ।
ସାଉଁଟିଣ ପକ୍ୱ କଦଳି ସଙ୍ଗେ କହନ୍ତି ନେଇ ।

ସୁ : ପ : ପୃ ୨୩

ଅଥବା

ଶରଯୂ , ତମସା , ପୁଣି ଗୋମତୀ ତଟିନୀ
ତୀର ଦେଶୁଁ ଅସୁରନ୍ତ ସୂର୍ଯ୍ୟ ବଂଶୀକରେ
ମହୋ ସ୍ତୁତେ ❋ ❋ ❋ ❋ ❋
❋ ❋ ❋ ❋ ❋ ❋ ❋ ❋
ଯମ ଦଂଷ୍ଟ୍ରା ସଦୃଶ ଶର ଦକ୍ଷ କରେ
ସବ୍ୟେ ଧନୁ ; ଠାଣନ୍ତେ ଯା ଗୁଣକର୍ଣ୍ଣ ଯାଏ ,
ଶତ୍ରୁ ସୀମନ୍ତିନୀ କର୍ଣ୍ଣୁ ବେଗେ ପଡ଼େ ଝଡ଼ି
କର୍ଣ୍ଣୋତ୍ପଳ , ଚୁଟେକରେ କଙ୍କଣ ଟଙ୍କାରେ ।

ମହାଯାତ୍ରା ପୃ: ୯୯

ପ୍ରଥମ ଉଦାହରଣରେ ନଗର ମଣିମାଣିକ୍ୟରେ ପୂର୍ଣ୍ଣ ଥିବା ସ୍ୱରୂପ କହିବାର ଅଭିମତାର୍ଥି ହାପଣିରେ ପଦ୍ମବଦନୀ ସଙ୍ଗେ ଗଜ ମୌକ୍ତିକ ବିକ୍ରି ହେଉଥିବା ବର୍ଣ୍ଣନ ଭଙ୍ଗୀ ଦ୍ୱାରା ପ୍ରକାଶ ପାଉ ଥିବାରୁ ପର୍ଯ୍ୟାୟୋକ୍ତି ଅଳଙ୍କାର ହେଲା ।

ଦ୍ୱିତୀୟ ଉଦାହରଣରେ ଶତ୍ରୁ ସାମନ୍ତଙ୍କ ମାନଙ୍କର ପତିମାନେ ଯୁଦ୍ଧରେ କ୍ଷତ୍ରିୟମାନଙ୍କଦ୍ୱାରା ମୃତହୋଇଥିବାରୁ ସ୍ତ୍ରୀମାନେ ବିଧବା ହୋଇଥିବା ଅଭିମତାର୍ଥ, ସେମାନଙ୍କର କର୍ଣ୍ଣୋତ୍ପଳ ଭ୍ରଂଶ ବଳୟ ଭଞ୍ଜନ ରୂପ ବର୍ଣ୍ଣନ ଭଙ୍ଗୀରୁ ପ୍ରକାଶ ହେଉଥିବାରୁ ମଧ୍ୟ ପର୍ଯ୍ୟାୟୋକ୍ତି ହୋଇ ଅଛି ।

୨୨—ବ୍ୟାଜୋକ୍ତି

ଗୋପ୍ୟ ବସ୍ତୁର ପ୍ରକାଶ ଶଙ୍କାରେ ତାହାକୁ ଭଙ୍ଗୀ ଦ୍ୱାରା ଗୋପନକଲେ ବ୍ୟାଜୋକ୍ତି ଅଳଙ୍କାର ହୁଏ । ଯଥା ।

ସୈରନ୍ଧ୍ରୀ ବଲ୍ଲଭର ଦେଖି ହାତୀ ଯୁଦ୍ଧ ।
ତାହାଁ ପାଇଁ ହେଉ ଅଛନ୍ତି ଅବୋଧ ॥
ଏହି ପ୍ରକାଶରୁ ଡରକୁଛି ମୁହିଁ ।
ବଲ୍ଲବ ସଙ୍ଗେ ପ୍ରୀତି କରେ କି ଲୁଚାଇ ॥
ସ୍ତ୍ରୀଣି ମାନଙ୍କର ଚରିତ ଦୁର୍ଜ୍ଞେୟ ।
ବଲ୍ଲବକୁ ଅବା ଏ କରିଥିବ ପ୍ରିୟ ॥
ଏମାନ ଶୁଣି ମୁହିଁ ତାହା ଭଣ୍ଡାଇ ।
କହେ ପାପ କଥା ନ ଜାଣଇ ମୁହିଁ ॥
ବୃଦ୍ଧ ବଧ କଥାକୁ କରି ଦେଇ ପଛ ।
ବ୍ରାହ୍ମଣଙ୍କ ହାତୀସଙ୍ଗତେ ଯୁଦ୍ଧାଇଛ ॥
ଏ ସବୁଗୁଁ ବିନା ମୁହିଁ ଦୁଃଖୀ ହୋଇ ।
ଧର୍ମକୁ ଚିହ୍ନି କରି ବିକଳ ହୁଅଇ ॥

କୃ: ମ: ଭ: ବି: ପ: ପୃ ୨୪

ବଲ୍ଲବ ସୈରନ୍ଧ୍ରୀଙ୍କର ସ୍ୱାମୀ ଥିବା ବସ୍ତୁର ପ୍ରକାଶାଶଙ୍କାରେ

ଯୁଧିଷ୍ଠିରଙ୍କୁ ସୈରନ୍ଧ୍ରୀ ବସ୍ତ୍ରୀ ସହିତ ଯୁଦ୍ଧରେ ବ୍ରାହ୍ମଣ ବଧ ଶଙ୍କାକର ଦୁଃଖିତ ହୋଇଥିବା ରୂପ ବ୍ୟାଜୋକ୍ତି ଦ୍ୱାରା ଗୋପନ କଲେ ।

୨୩—ବ୍ୟାଜ ସ୍ତୁତି

ନିନ୍ଦାରୁ ସ୍ତୁତି ବା ସ୍ତୁତିରୁ ନିନ୍ଦା ଅଭିପ୍ରାୟ ଥିଲେ ବ୍ୟାଜସ୍ତୁତି ଅଳଙ୍କାର ହୁଏ । ଯଥା ।

କହୁଥାଏ ମାମୁଁ ମୋତେ କେତେ ସେନେହ
କରନ୍ତା ବନ୍ଦନା ଦହୁ ହେଉ ଅଛି ଦେହ ।

ର : କ : ପୃ ୧୦୬

କଂସଙ୍କର ସ୍ନେହପ୍ରତି ଶ୍ରୀକୃଷ୍ଣଙ୍କର ଉକ୍ତିଥିବାରୁ ନିନ୍ଦାମୂଳକ ସ୍ତୁତି ଅଭିପ୍ରାୟ ଅଛି ॥

୨୪—କାବ୍ୟଲିଙ୍ଗ

ବାକ୍ୟ ବା ପଦାର୍ଥ ଉଦ୍ଦେଶ୍ୟ ଭାବପ୍ରଯୁକ୍ତ ହେତୁ ହେଲେ କାବ୍ୟଲିଙ୍ଗ ଅଳଙ୍କାର ହୁଏ । ଯଥା ।

ଖଳ କାନ କୁହା ଅବ ଈର୍ଷ୍ୟା ଉପାସକେ
ପୂର୍ଣ୍ଣ ସଦା ଗୃହ ସଙ୍ଘ ; * * *
* * * * * * * *
* * * * * * * *
ବୃଥା ହେଲା ଈର୍ଷ୍ୟାର ସେ ଆଶା
ଯେଣୁ ତୁମ୍ଭେ ଏକ କର୍ଣ୍ଣେ କାନ କୁହା ବାଣୀ
ଶୁଣି ଅନ୍ୟ କର୍ଣ୍ଣମୂଳ ରଖିଲ ଗୁପତେ
ଶୁଣିବାକୁ ଅଭିଯୁକ୍ତ କଥା ଯଥାକାଳେ ।

ମ : ଯା : ପୃ ୬୬

ବର୍ଣ୍ଣ୍ୟ ବ୍ୟକ୍ତି ଖଳ କାନକୁହାଙ୍କର ବାକ୍ୟରେ ମୁଗ୍ଧ ହୁଅନ୍ତୁନାହିଁ ଏରୂପ ଉଦ୍ଦେଶ୍ୟଥିବାରୁ ପ୍ରତି "ଏକକର୍ଣ୍ଣେ କାନକୁହାବାଣୀ ଶୁଣି ଅନ୍ୟକର୍ଣ୍ଣ ଅଭିଯୁକ୍ତକଥା ଯଥାକାଳେ ଶୁଣିବାକୁ ଗୁପ୍ତରେ ରଖିଲ" ଏହିବାକ୍ୟାର୍ଥ ହେତୁହେବାରୁ କାବ୍ୟଲିଙ୍ଗ ଅଳଙ୍କାରହେଲା ।

୨୫—ପରିକର

ବିଶେଷଣ ଅଭିପ୍ରାୟମୂଳକ ହେଲେ ପରିକରାଳଙ୍କାର ହୁଏ । ଯଥା ।

ମାତଃ ! ବଦ୍ଧ୍ୟାଧି    ବଗ୍ ଭୟ ହାରି
ହେ ଅବର କୃପାକର
ଛୋଭ ଏ କେଶଙ୍ଗ    ହେଉ ସଦା ମୋର
ଛପଦ ହଣ୍ଣ ବେଶସ୍ଥ

ଯ : ହେ : ପୃ ୭୫

ଏଠାରେ ବର ଓଁ କୃପାଭକ୍ଷା ଅଭିପ୍ରାୟସହିତ ବଗ୍ଭୟହାରି ହେବାବର ବିଶେଷଣ ଅଭିପ୍ରାୟ ମୂଳକ ହୋଇ ସାର୍ଥକତା ସମ୍ପା-ଦନ କରୁଅଛି, ଏଣୁ ପରିକରାଳଙ୍କାର ହେଲା ।

୨୬—ସ୍ୱଭାବୋକ୍ତି

ଚମତ୍କାରିତା ସହିତ ବର୍ଣ୍ଣନୀୟ ବିଷୟର ଯଥାର୍ଥ ବର୍ଣ୍ଣନାକୁ ସ୍ୱଭାବୋକ୍ତି ଅଳଙ୍କାର କୋହଯାଏ । ଯଥା

ଯୂଥ ଯୂଥ ହୋଇ ଭ୍ରମନ୍ତି ନାନାରଙ୍ଗେ ବିହଙ୍ଗ
ଭରଙ୍ଗ ଗୃହିଣି ଗୃହାନ୍ତି ଗୃରୁ ଗ୍ରୀବା ଢୋଳଣେ
କନ୍ଦୁକ କ୍ରୀଡାରେ ସୁନ୍ଦରୀ ଅଙ୍ଗରତ ଏସ୍ଥଳେ
ଉଠୁଛୁ ପଡୁଛୁ କନ୍ଦୁକ ଗୃରୁ କର କମଳେ
କନ୍ଦୁ କର ଗତି କଳନ୍ତେ କ୍ରୀଡ଼ା ଲୋଲ ଲୋଚନ
ଚଳ—ଭ୍ରୂ-ଗୃରୁ ନର୍ତ୍ତନ ଦିଶେ କିବା ଶୋଭନ

ଚ : ଭା : ପୃ ୧୬

ବର୍ଣ୍ଣନୀୟ ବିଷୟ ତରଣୀୟଥ ଓ ଚନ୍ଦ୍ରଭାଗା ଏହି ଦୁଇଙ୍କର ଗୃରୁ ଗ୍ରୀବା ଢୋଳନ ଓ ତରଙ୍ଗଗୃହିଣୀ ଗ୍ରହଣିକା ଓ କନ୍ଦୁକ ହସ୍ତରେ ପଡିବା, କନ୍ଦୁକର ଗତି କଳନା କରନ୍ତେ ଚଳ—ଭ୍ରୂରୁ ଗୃରୁନର୍ତ୍ତନ ଇତ୍ୟାଦି ବର୍ଣ୍ଣନ ଚମତ୍କାରିତା ,ସମ୍ପାଦନ କରୁଥିବାରୁ ସ୍ୱଭାବୋକ୍ତି ଅଳଙ୍କାରହେଲା ।

୧୭ ପରିବୃତ୍ତି

ସମାନ ପଦାର୍ଥ ସମାନ ବା ନ୍ୟୂନ ଦ୍ୱାରା ପରିବର୍ତ୍ତିତ ହେଲେ ପରିବୃତ୍ତି ଅଳଙ୍କାର ହୁଏ । ଯଥା ।

ତୋ ଦେହରୁ ସୌରଭ୍ୟ ନେଇ ଗନ୍ଧବହ
ତୀର ବାସୀଙ୍କୁ ଦେଉଛି ,
ତାହାଙ୍କ ସନ୍ତାପ ନେଇ ଅବ୍ଧି ଗର୍ଭେ
ବାଡବ ଛଳେ ଥୋଇଛି ।

ଚନ୍ଦ୍ରୋପଳା : ପୃ ୩୫

ଗନ୍ଧବହ(ବାୟୁ)ଚନ୍ଦ୍ରୋପଳା ଦେହରୁ ସୌରଭ୍ୟ ନେଇ ତୀର ବାସୀଙ୍କୁ ଦେବା , ତାହାଙ୍କର ସନ୍ତାପ ନେଇ ଅବ୍ଧି ଗର୍ଭେ ବାଡବାନଳଛଳେ ଥୋଇବାରୂପ ବିନିମୟ ଦ୍ୱାରା ପରିବୃତ୍ତି ଅଳଙ୍କାର ହୋଇଅଛି ।

୧୮— ବିଷମାଳଙ୍କାର

ଗୁଣ କିମ୍ବା ଦ୍ୱାରା କାର୍ଯ୍ୟ ଓ କାରଣ ଦୁହିଁଙ୍କର ବିରୁଦ୍ଧତା କିମ୍ବା ଅରମ୍ଭିତ ବୈଫଲ୍ୟ ଥାଇ ଅନର୍ଥ ଉତ୍ପନ୍ନ ହେଲେ ବିଷମାଳଙ୍କାର ହୁଏ । ଯଥା ।

ଅସି ଥିଲେ ଖରପଣ ଦେଖାଇବ ଅଣେ
କୁରୁ କ୍ଷେତ୍ରେ ପଡିଲେସେ ଗୋମାୟୁ ଗର୍ଭସେ ।

ଏଠାରେ ଖରପଣ ଦେଖାଇବା ନିମନ୍ତେ ଅସିବାରୂପ କାର୍ଯ୍ୟର ବୈଫଲ୍ୟ ହୋଇ କୁରୁକ୍ଷେତ୍ରରେ ଶୃଗାଳ କବଳରେ ପଡିବା ରୂପ ଅନର୍ଥ ଉତ୍ପନ୍ନ ହେବାରୁ ବିଷମାଳଙ୍କାର ହେଲା ।

୧୯ —ଅସଙ୍ଗତି

କାରଣ ଥିବା ସ୍ଥଳରେ କାର୍ଯ୍ୟ ଉତ୍ପନ୍ନ ନୋହି ଅନ୍ୟ ସ୍ଥାନରେ ଉତ୍ପନ୍ନହେଲେ ଅସଙ୍ଗତି ଅଳଙ୍କାର ହୁଏ । ଯଥା ।

ଯୌବନ ହରିଲେ ତରୁଣୀ ଦେହରୁ
ହନ ମଣି ଶୂନ୍ୟେ ଥାଇ

ଫାଶି ଦେଉଛନ୍ତି ଧୀବରେ ମୀନଙ୍କୁ

ବଡ଼ିଶ ରଜ୍ଜୁ ପକାଇ

ଚନ୍ଦ୍ରୋପଲା : ପୃ ୮

ଜୀବ ବଧ୍ୟା ଫାଶିଦାୟକ ପ୍ରଭାକରଣ ଯେହେତୁକ ଜୀବହତ୍ୟା କାରୀ ଲୋକ ଫାଶି ପାଉଅଛନ୍ତି । ଏଠାରେ ଦିନମଣିଙ୍କଠାରେ ଜୀବନ ହରଣ ରୂପ କାରଣ ରହି ଫାଶି ସ୍ୱରୂପ ଦୀର୍ଘ ମୀନଙ୍କ ଠାରେ ଉତ୍ପନ୍ନହେବାରୁ ଅସଙ୍ଗତି ଅଲଂକାର । ଅଥବା

ଚାଃ ପୂଃ ପୃ ୧୦

" ଯାହା ତ ହେଉଛି ପ୍ରଗରେ ଇତ୍ୟାଦି"

୩୦—ଭଦ୍ରେଥାଲେଷ

ବାକ୍ୟ ପର ଅଭାବ ଥିବା ପଦ ବାକ୍ୟ ହୋଇନଥିଲେ ଭଦ୍ରେଥା ଲେଷାଲଂକାର ହୁଏ । ଯଥା ।

ତରୁଣୀର ଗଳି ସ୍ଖଳିତ ହୋଇଲା

ବଢ଼ିଲା ତରଣି ଗତି

ଜୀବନ ଗ୍ରହନ୍ତେ ପୁଲିନ-ଅବଳୀ

ହୋଇଲା ସୁକାନ୍ତ ମତି ।

ଚାଃ ପୂଃ ପୃ ୭

ଏଠାରେ ପୁଲିନମାଳା ଜୀବନ ଗ୍ରହିବାରୁ ସୁକାନ୍ତ ମତି ହେଲା , ଏହି ବାକ୍ୟାର୍ଥ ଅଭାବ ଅଛି ପରନ୍ତୁ ଜୀବନ ଶବ୍ଦ ଜଳ ବାଚକ ହୋଇଥିବାରୁ ବାକ୍ୟାର୍ଥ ନୁହେଁ, ତଦନୁରୂପ ଉପର ପଦରେ ତରଣି ପଦର ଏକ ପଦରେ ସୂର୍ଯ୍ୟ ଓ ଅପର ପଦରେ ନୌକା ଅର୍ଥ ହେଲେ ଭଦ୍ରେଥର ପରିହାର ହେଲା ।

୩୧—ବ୍ୟାଘାତ

ଯେ ପଦାର୍ଥ ଦ୍ୱାରା ଯେ ପଦାର୍ଥ ଯେରୂପ ହୋଇଥାଏ , ସେହି ପଦାର୍ଥ ଦ୍ୱାରା ତାହାର ଅନ୍ୟଥାଭାବ ବର୍ଣ୍ଣନ ଚମତ୍କାରଜନକ ହେଲେ ବ୍ୟାଘାତାଲଂକାର ହୁଏ । ଯଥା ।

ଯେଉଁ ପୁଷ୍ପାୟୁଧ ବନ୍ଧିଲା ମୋ ହୃଦ
ବନ୍ଧୁରୁ ସେହିତା ହୃଦ
ମଣିଥିଲି ଯାକୁ ପରବର ଏବେ
ସେ ମୋର ଇଷ୍ଟ ସୁହୃଦ ।

ଯ: ଚେ: ପୃ ୭୩

ଏଠାରେ ପୁଷ୍ପାୟୁଧ (ମଦନ) ଯେରୂପ ଶରପ୍ରହାର କରିବା ଦ୍ୱାରା ଯଯାତିଙ୍କର ଶତ୍ରୁ ହୋଇଥିଲା । ତଦ୍ରୂପ ପ୍ରହାର ଦ୍ୱାରା ଶତ୍ରୁରୁ ଭିନ୍ନ (ମିତ୍ର) ଅବାର ହେବାରୁ ବ୍ୟାଘାତ ଅଲଂକାର ହେଲା ।

୩୨—ଅନୁକୂଳ

ପ୍ରତିକୂଳ ବିଷୟ ଯଦି ଅନୁକୂଳ ହୁଏ, ତେବେ ଅନୁକୂଳ ଅଳଙ୍କାର ହୁଏ । । ଯଥା ।

ଲଳିତାର ବାଞ୍ଛା ଯଯାତି ନ ଯାହା
ଜାଣିଲା କମଳା ଚିରୁ
ତହିଁ ବଳ ତାହା ଜାଣିଲା ସ୍ୱସାର
ସଲଜ୍ଜ ମୁଖ ଭଙ୍ଗୀରୁ !

ଏଠାରେ କମଳାର ସଲଜ୍ଜ ମୁଖ ଭଙ୍ଗୀ ଲଳିତାର ଯାବତୀୟ ଅଭିଳାଷ ଯଯାତିଙ୍କୁ ଜଣାଇ ଦେବା ପକ୍ଷେ ପ୍ରତିକୂଳ ହେଲେ ସୁଦ୍ଧା ତାହା ସୂଚିତକର ଦେବା ଦ୍ୱାରା ଅନୁକୂଳାନୁବନ୍ଧି ହେବାରୁ ଅନୁକୂଳ ଅଳଙ୍କାର ହେଲା ।

୩୩—ଅର୍ଥାପତ୍ତି

ଏକ ବିଷୟ କଥନ ଦ୍ୱାରା ବିଷୟାନ୍ତରର କଥନ ସହଜରେ ନିଷ୍ପନ୍ନ ହେଲେ ଅର୍ଥାପତ୍ତି ଅଳଙ୍କାର ହୁଏ । ଯଥା: ।

ମଗଧେ, ମୈଥିଳେ, ଅଙ୍ଗେ, ବଙ୍ଗେ ପୁଣି
ଦେଖିଛୁ କେତେ ସୁନ୍ଦରୀ

ଏଯୋଷା-ଚରଣ ଘଷା ପଥରକୁ
ହେବ ହିତ କେହ୍ନ ସଉ ।
ଯ : କେ : ପୃ ୬୦

ଏଠାରେ ଲଲନା ଚରଣ ଘଷା ପଥରକୁ କେହ୍ନ ସହନ୍ତେ ; ଏହା କହିବାଦ୍ୱାରା ମାଗଧୀ, ମୈଥିଳୀ, ବଙ୍ଗାଳୁଣୀ କେହି ହେଲେ ସୁଦ୍ଧା ଏହାର ସଦୃଶ ନୁହନ୍ତି, ଏରୂପ ବିଷୟାନ୍ତର ନିଷ୍ପନ୍ନ ହେଉଥି-ବାରୁ ଅର୍ଥାପତ୍ତି ଅଳଂକାର ହେଲା । ଅଥବା

ଅନକଥା ଥାଉ ଯତିଜନମନ
ହୋଇଛି ଅଜଅଥୟ
ଦେଖୁଥିଲେ ଯେହ୍ନ ବ୍ରହ୍ମମୟ ବଣ
ଦେଖନ୍ତି ସେ ନାରୀମୟ ।

ସେହି ସ୍ତ୍ରୀକୁ ଦେଖିବା ଦ୍ୱାରା ତାଦୃଶ ଯତି ଜନମନ ଅଥୟ ହେଉଅଛି ଏହି ବିଷୟ କଥନ ଦ୍ୱାରା ଅନ୍ୟ ସାଂସାରିକ ଲୋକମାନଙ୍କ ମନ ଅଥୟ ହେବା ସହଜରେ ନିଷ୍ପନ୍ନ ହେବାହେତୁ ଅର୍ଥାପତ୍ତି ଅଳଂକାର ହେଲା ।

୮୪ — ସଙ୍କର

ଅଳଙ୍କାରମାନେ ପରସ୍ପରାପେକ୍ଷି ହେଲେ ସଙ୍କର ଅଳଂକାର ହୁଏ । ଯଥା ।

ତୋ ଦେହର ଶୈତ୍ୟ ନେଇ ଗନ୍ଧବାହ ତୀରବାସିଙ୍କୁ ଦେଉଛି ।
ତାହାଙ୍କ ସନ୍ତାପ ନେଇ ଅଙ୍ଗେ ଗର୍ଭେ ବାଡବ ସ୍ଥଳେ ଥୋଇଛି ।

ଏଠାରେ ସନ୍ତାପରୂପ ଅପ୍ରକୃତ ପଦାର୍ଥ ନିଷ୍ଟୟୁକର ବାଡବାନ-ଳରୂପ ପ୍ରକୃତ ପଦାର୍ଥକୁ ନିଷେଧ କରିବାରୁ ଅପହ୍ନୁତି ଅଳଙ୍କାର ହେଲା । ପୁଣି ଏହି ଅଳଂକାର ପରିବୃତ୍ତି ଅଳଂକାରକୁ ଅପେକ୍ଷା କରୁଥିବାରୁ ଉଭୟ ପରସ୍ପରାପେକ୍ଷି ହୋଇ ସଙ୍କର ଅଳଙ୍କାର ହେଲା ।

୮୫— ସଂସୃଷ୍ଟି

ଏକସ୍ଥାନରେ ଏକରୁ ଅଧିକ ଅଳଂକାରର ସମାହାର

ହେଲେ ସଂସୃଷ୍ଟି ଅଳଂକାର ହୁଏ । ଯଥା ।

ବମ୍ବାଧରଙ୍କର ଚମ୍ପକ ଅଙ୍ଗୁଳି କଙ୍କଣେ ମଥୁ ଝଙ୍କାର
ଉତ୍ପଳବାଣସେ କେନ୍ଦୁଟରେ ଗଢା ହେଉଅଛି ଲୌହଭାର,

ଏଠାରେ ଉପମା ଓ ପର୍ଯ୍ୟାୟୋକ୍ତି ଅଳଂକାର ଦ୍ୱନ୍ଦ୍ୱର ସମାହାର ହୋଇଥିବାରୁ ସଂସୃଷ୍ଟି ଅଳଂକାର ହେଲା ।

